# ପ୍ରଫେସର କୃଷ୍ଣଚରଣ ସାହୁ
# ରଚନା ସମ୍ଭାର ୧
## ସାରଳା- ପୂର୍ବ ସାହିତ୍ୟ



# ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୧

## ସାରଳା - ପୂର୍ବ ସାହିତ୍ୟ

ମୁଖ୍ୟ ସଂପାଦକ :

ଯତୀନ୍ଦ୍ର ମୋହନ ମହାନ୍ତି

ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ

ଭୁବନେଶ୍ୱର

# ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୧
## ସାରଳା - ପୂର୍ବ ସାହିତ୍ୟ


ମୁଖ୍ୟ ସଂପାଦକ    ଯତୀନ୍ଦ୍ର ମୋହନ ମହାନ୍ତି ;

ସଂପାଦକ ମଣ୍ଡଳୀ :    ରାଜେନ୍ଦ୍ର ପ୍ରସାଦ ଦାସ, ସଂଘମିତ୍ରା ମିଶ୍ର, ବିଜୟଲକ୍ଷ୍ମୀ ସ୍ୱାଇଁ, ବିରାଜ ମୋହନ ଦାସ, ଉଦୟନାଥ ସାହୁ ;

ପ୍ରକାଶକ    ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ , ଭୁବନେଶ୍ୱର

ପ୍ରଚ୍ଛଦ, ଡିଟିପି,
ମୁଦ୍ରଣ ଓ ବଂଧେଇ :    କେଦାର ପ୍ରିଣ୍ଟିଂ ପ୍ରେସ୍, ବାୟାବାବା ମଠ ଲେନ, ଭୁବନେଶ୍ୱର -୭

ବିତରକ    ସୁବର୍ଣ୍ଣରେଖା, କଟକ ରୋଡ଼ (ଲକ୍ଷ୍ମୀସାଗର ଛକ), ଭୁବନେଶ୍ୱର - ୭୫୧ ୦୦୬

ପ୍ରଥମ ମୁଦ୍ରଣ    ୧୯୯୮

ମୂଲ୍ୟ    ୮୦ ଟଙ୍କା


# PROFESSOR KRUSHNA CHARAN SĀHOO RACHANĀ SAMBHĀR I

(Collected Works of Professor Krushna Charan Sahoo, Volume I)


**Chief Editor**    Jatindra Mohan Mohanty

**Editorial Board**    Rajendra Prasad Das, Ms. Sanghamitra Mishra, Ms. Bijayalaxmi Swain, Biraj Mohan Das, Udayanath Sahu

**Publisher**    **Professor Krushna Charan Sahoo Smruti Parisada,**

**Cover design,**D.T.P,
**Printing & Binding**    Kedar Printing Press, Bayababa Matha Lane, Bhubaneswar -7

**Distributor**    Subarnarekha, Cuttack Road (Laxmisagar Chhak), Bhubaneswar - 6

**First Edition**    1998

**Price**    Rs. 80.00

# ଉତ୍ସର୍ଗ

ଫାଦର କାମିଲ ବୁଲକେଙ୍କ ସ୍ମୃତି ଉଦ୍ଦେଶ୍ୟରେ

# ମୁଖବନ୍ଧ

ପ୍ରଫେସର କୃଷ୍ଣଚରଣ ସାହୁଙ୍କର ଦେହାନ୍ତ ହେଲା ୧୪.୪.୯୭ରେ । **ତାଙ୍କର** ତିରୋଧାନ ଯେପରି ଆକସ୍ମିକ ସେହିପରି ତୀବ୍ର ଦୁଃଖଦାୟକ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅବସର ନେବା ପରେ ସେ ଏତେ ଏତେ କାର୍ଯ୍ୟରେ - ବିଶେଷ କରି ଗବେଷଣା ଓ ପୋଥି- ସଂପାଦନା କାର୍ଯ୍ୟରେ ଲିପ୍ତ ହୋଇ ପଡିଥିଲେ ଯେ, ମନେ ହେଉଥିଲା ସତେ ଯେପରି ତାଙ୍କର କର୍ମ ଜୀବନ ଅବସର ନେବା ପରେ ଆରମ୍ଭ ହେଲା । ତେଣୁ ପ୍ରଫେସର ସାହୁଙ୍କର ଅକସ୍ମାତ ତିରୋଧାନ ଏକ ଦାରୁଣ ଦୁର୍ଘଟଣା କୁହାଯାଇ ପାରେ । **ତାଙ୍କର** ଦେହାନ୍ତ ପରେ, ତାଙ୍କର ବହୁ ଶୁଭେଚ୍ଛୁ, ବଂଧୁ ଓ ଛାତ୍ରଛାତ୍ରୀ ଏକାଠି ହୋଇ ପ୍ରଫେସର ସାହୁଙ୍କର ଅସଂପୂର୍ଣ୍ଣ କାର୍ଯ୍ୟକୁ କିପରି ସଂପୂର୍ଣ୍ଣ କରାଯାଇ ପାରେ ସେ ବିଷୟରେ ବିଚାର ବିମର୍ଷ କରିଥିଲେ । କିନ୍ତୁ ଦେଖାଗଲା ସାହୁଙ୍କର ଅସଂପୂର୍ଣ୍ଣ କାର୍ଯ୍ୟକୁ ସଂପୂର୍ଣ୍ଣ କରିବା ସମ୍ଭବ ନୁହେଁ, କାରଣ ସେ ନିଜେ ହିଁ କେବଳ ନିଜର କାର୍ଯ୍ୟକୁ ସଂପୂର୍ଣ୍ଣ କରିଥାନ୍ତେ । ତେଣୁ ସ୍ଥିର ହେଲା, ସେ ନିଜର ଦୀର୍ଘ ଅଧ୍ୟୟନ ଓ ଅଧ୍ୟାପନା ଜୀବନରେ ଓଡିଆ ସାହିତ୍ୟ ସଂପର୍କରେ ଯେଉଁସବୁ ବିପୁଳ ଓ ପ୍ରଚୁର ଆଲୋଚନାମାନ କରିଛନ୍ତି, ଯାହାର କିଛି କେତେକ ବହି ଭାବରେ ପ୍ରକାଶ ପାଇଛି, ଓ ଅନେକ ବିଭିନ୍ନ ପତ୍ର ପତ୍ରିକାରେ ବିକ୍ଷିପ୍ତ ହୋଇ ରହିଛି, ସେ ସବୁକୁ ଏକାଠି କରି କ୍ରମାନ୍ୱୟରେ ତାଙ୍କର ଲେଖାର ଗ୍ରନ୍ଥାବଳୀ ଭାବରେ ପ୍ରକାଶ କରାଯାଇ ପାରିବ । ଏହି ଉଦ୍ଦେଶ୍ୟ ଆଖି ଆଗରେ ରଖି 'ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ' ଗଠିତ ହେଲା, ଓ କିଛି ଶୁଭେଚ୍ଛୁ ବଂଧୁଙ୍କଠାରୁ ଏହି ଉଦ୍ଦେଶ୍ୟରେ କିଛି ଆର୍ଥିକ ଅନୁଦାନ ବି ସଂଗ୍ରହ କରାଗଲା ।

ବର୍ତ୍ତମାନ ପ୍ରକାଶ ପାଉଥିବା **ପ୍ରଫେସର କୃଷ୍ଣଚରଣ ସାହୁ ରଚନାସମ୍ଭାର ୧,** ଏହି ନିଷ୍ପତ୍ତି ଓ ଉଦ୍ୟମର ପ୍ରଥମ ଫଳ । ଏହି ଗ୍ରନ୍ଥରେ ସାରଳା ପୂର୍ବବର୍ତ୍ତୀ ଓଡିଆ ସାହିତ୍ୟ ସଂପର୍କରେ ସାହୁଙ୍କର ଲେଖାସବୁକୁ ଏକାଠି କରାଯାଇଛି । **ରଚନା ସମ୍ଭାରର** ଦ୍ୱିତୀୟ ଓ ତୃତୀୟ ଭାଗ **ରଚନାସମ୍ଭାର ୨** ଓ '**ରଚନାସମ୍ଭାର ୩**' ର ସଂପାଦନା କାର୍ଯ୍ୟ ପ୍ରାୟ

ସରିଗଲାଣି । ଆଶା କରାଯାଉଛି ଦ୍ୱିତୀୟ ଓ ତୃତୀୟ ଭାଗ ୧୯୯୮ ଶେଷ ସୁଦ୍ଧା ପ୍ରକାଶ କରାଯାଇ ପାରିବ । ଏହି ଦୁଇଟି ଭାଗରେ ପ୍ରଫେସର ସାହୁଙ୍କର ସାରଳା ଦାସଙ୍କ ସଂପର୍କରେ ସବୁ ଲେଖାଗୁଡିକ ସଂକଳିତ ହେବ । ଉଦ୍ଦେଶ୍ୟ, ରଚନାସମ୍ଭାରର ବିଭିନ୍ନ ଭାଗ ମାଧ୍ୟମରେ ଓଟିଆ ସାହିତ୍ୟର କାଳାନୁକ୍ରମିକ ଅଭିବୃଦ୍ଧିର ଏକ ବିସ୍ତୃତ ସଂଗଠନ ଗଢ଼ି ତୋଳିବା, ଯାହାକି ପ୍ରଫେସର ସାହୁଙ୍କର ନିଜସ୍ୱ ବିଚାର ଧାରାକୁ ପ୍ରସାରିତ କରିବା ସାଙ୍ଗେ ସାଙ୍ଗେ, ପାଠକ ପାଠିକା ମାନଙ୍କୁ ଓଡିଆ ସାହିତ୍ୟର ଜଟିଳ ଅଭିବୃଦ୍ଧି ସଂପର୍କରେ ଯଥେଷ୍ଟ ଧାରଣା ଦେଇ ପାରିବ । ପ୍ରଫେସର ସାହୁ ବଞ୍ଚିଥିଲେ, ଏହିପରି ଏକ ପ୍ରକାଶନର ଅବସରରେ ସେ ହୁଏତ ନିଜର ମତାମତକୁ ପରିମାର୍ଜନ ଓ ପରିବର୍ଦ୍ଧିତ କରି ପାରିଥାନ୍ତେ । କିନ୍ତୁ ତା ଆଉ ହେବାର ନୁହେଁ । ତେଣୁ ଯାହା ଅଛି ତାକୁ ସବୁ ଆମେ ଏକାଠି କରି ପ୍ରକାଶ କରୁଛୁ ଏହି ବିଶ୍ୱାସରେ ଯେ ତାର ମୂଲ୍ୟ ଅସୀମ, ଓ ସେ ସବୁକୁ ସଂକଳିତ କରି ସଂରକ୍ଷିତ କରି ରଖିବା ବର୍ତ୍ତମାନ ପୀଢ଼ିର ଏକାନ୍ତ କର୍ତ୍ତବ୍ୟ । ପ୍ରଫେସର ସାହୁ ଜ୍ଞାନ ଓ ଅଜ୍ଞାନର ପରିସୀମା ବାହାରକୁ ଚାଲି ଯାଇଛନ୍ତି। କିନ୍ତୁ ତାଙ୍କର ମୁକ୍ତ ଆତ୍ମା ଏସବୁ କାର୍ଯ୍ୟକୁ ଯେ ନିଜର ଉଦାରତାରେ ଅବଲୋକନ କରିବ, ଓ ଏ କାର୍ଯ୍ୟ ପାଇଁ ନିଜର ଆଶୀର୍ବାଦ ଦେବ ଏ ବିଷୟରେ ଆମର ସନ୍ଦେହ ନାହିଁ ।

**ଯତୀନ୍ଦ୍ର ମୋହନ ମହାନ୍ତି**

*ଅଧ୍ୟକ୍ଷ, ପ୍ରଫେସର କୃଷ୍ଣଚରଣ ସାହୁ*
*ସ୍ମୃତି ପରିଷଦ,*
*୩୧.୩.୯୮*

# ସୂଚୀ

# ସାରସ୍ୱତ ସାଧକ କୃଷ୍ଣଚରଣ

ଜଣେ ଶିକ୍ଷାବିତ୍ ଏକ ଅନୁଷ୍ଠାନ । ସେ ସମୟର ସ୍ପଷ୍ଟ ପ୍ରତିବିମ୍ବ ଓ ଜୀବନ୍ତ ଉଦାହରଣ । ଡଃ କୃଷ୍ଣଚରଣ ସାହୁଙ୍କ ଜୀବନୀ, କୃତି ଓ କୃତିତ୍ୱକୁ ଏହି ପର୍ଯ୍ୟାୟରେ ମୂଲ୍ୟାୟନ କରାଯାଇପାରେ । ଡଃ ସାହୁ ଜଣେ ନୀରବ ସାଧକ । 'ଗବେଷକ' କହିଲେ ଯେଉଁ ଧର୍ମସଂପନ୍ନ ପ୍ରଜ୍ଞା, ନିରାଡ଼ମ୍ବର ବ୍ୟକ୍ତିତ୍ୱଟିଏ ଆଖି ସାମନାକୁ ଆସିଯାଏ, କୃଷ୍ଣଚରଣ ତାହାର ମୂର୍ତ୍ତିମନ୍ତ ବିଗ୍ରହ । ଗବେଷଣା, ପୋଥି ସଂପାଦନା, ସୃଜନଶୀଳ ସମାଲୋଚନା ତଥା ସାହିତ୍ୟର ଏକାଧିକ ଦିଗରେ ଲେଖନୀ ଚାଳନା କରିଥିବା ଏହି ପ୍ରତିଭା ଓଡ଼ିଆ ସାହିତ୍ୟର ଇତିହାସରେ ବିଶିଷ୍ଟ ସ୍ଥାନର ଅଧିକାରୀ ।

## ପାରିବାରିକ ଜୀବନ

ଅବିଭକ୍ତ କଟକ ଜିଲ୍ଲାର ଗୋବିନ୍ଦପୁର ଥାନା ଅନ୍ତର୍ଗତ ନାଚି ଗ୍ରାମରେ ୧୯୨୯ ମସିହା ଏପ୍ରିଲ ମାସ ୧୬ ତାରିଖରେ ଜନ୍ମ ଗ୍ରହଣ କରିଥିଲେ ଏହି ବରେଣ୍ୟ ସ୍ରଷ୍ଟା ଏବଂ ସାହିତ୍ୟ ସାଧକ । ତାଙ୍କର ପିତାଙ୍କ ନାମ ନଟବର ସାହୁ ଓ ମାତାଙ୍କ ନାମ ଅଲ୍ୟଳ କୁମାରୀ ଦେବୀ । ଚାରିଭାଇ ଓ ତିନିଭଉଣୀଙ୍କ ମଧ୍ୟରେ କୃଷ୍ଣ ଚରଣ ଥିଲେ ଚତୁର୍ଥ ସନ୍ତାନ । ତାଙ୍କ ପରିବାରରେ ଜେଜେବାପା, ବାପା ଓ ଜକା ସମସ୍ତେ ଶିକ୍ଷକତା କରୁଥିଲେ । ସେଇଥିପାଇଁ ଗ୍ରାମବାସୀମାନଙ୍କ ମଧ୍ୟରେ ତାଙ୍କ ଘର 'ମାଷ୍ଟର ଘର' ନାମରେ ପରିଚିତ ଥିଲା । ୧୯୪୬ ମସିହାରେ ତତ୍କାଳୀନ ସାମାଜିକ ପ୍ରଥାନୁଯାୟୀ ସେ ତିର୍ତ୍ତୋଲ ମୂଳଗାଁର ବରଜୁ ପ୍ରଧାନଙ୍କ କନ୍ୟା ଶ୍ରୀମତୀ ସରଳା ଦେବୀଙ୍କ ପାଣି ଗ୍ରହଣ କରିଥିଲେ । ପାଞ୍ଚୋଟି କନ୍ୟା ଓ ଜଣେ ପୁତ୍ର ସନ୍ତାନଙ୍କୁ ନେଇ ଗଡ଼ିଚାଲିଥିଲା ତାଙ୍କ ଜୀବନ । ଅବସର ଗ୍ରହଣ ବେଳକୁ କିଛିଦିନ ଧରି ଅସୁସ୍ଥ ଥିଲେ ସରଳା ଦେବୀ । ପରିଶେଷରେ କୃଷ୍ଣ ଚରଣଙ୍କୁ ଶୋକ ସାଗରରେ ଭସାଇ କନ୍ୟା ତଥା ପରିବାରର ଦାୟିତ୍ୱ ଛାଡ଼ି ସେ ଅହ୍ୟରାଣୀ ହୋଇ ଇହଧାମ ତ୍ୟାଗକଲେ ୧୯୯୨ ଜାନୁଆରୀ ୨୪ ତାରିଖ ଦିନ ।

## ଶିକ୍ଷା

ନାଚି ଗ୍ରାମର ଏକ ବେରୁଆଁ ଉଚ୍ଚ ପ୍ରଥମିକ ବିଦ୍ୟାଳୟରେ ଆରମ୍ଭ ହୋଇଥିଲା କୃଷ୍ଣ ଚରଣଙ୍କର ପାଠପଢ଼ା । ସେହି ବିଦ୍ୟାଳୟରୁ ଉଚ୍ଚ ପ୍ରାଥମିକ ଶିକ୍ଷା ଲାଭ ପରେ ସେ ନାମ ଲେଖାଇଥିଲେ ସିଠାଳ ମାଇନର ସ୍କୁଲରେ । ୧୯୪୨ ମସିହାରେ ମାଇନର୍ ପାଶକରି ସେ କଟକ ଆସିଥିଲେ ମାଟ୍ରିକ୍ ପଢ଼ିବା ପାଇଁ । କଟକ ଉଚ୍ଚ ବିଚାଳାଳୟରେ ମୋହରୀର କାମ

କରୁଥିବା ତାଙ୍କର ଜଣେ ପିଉସାଙ୍କ ଘରେ ରହି ସେ ପି.ଏମ୍ ଏକାଡ଼େମୀରେ ମ୍ୟାଟ୍ରିକ୍ ପଢ଼ି, ଦ୍ୱିତୀୟ ଶ୍ରେଣୀରେ ମ୍ୟାଟ୍ରିକ୍ ପାଶ୍ କଲେ । ଗଣିତକୁ ଅତିରିକ୍ତ ପାଠ୍ୟ ଭାବରେ ସେ କେବଳ ନେଇ ନଥିଲେ ସେଥିରେ ମଧ୍ୟ ନିଜର ଦକ୍ଷତା ପ୍ରତିପାଦନ କରି ପାରିଥିଲେ । ଉଚ୍ଚଶିକ୍ଷା ଲାଭ ନିମିତ୍ତ ପୋଷଣ କରିଥିବା ଆଶାକୁ ଚରିତାର୍ଥ କରିବା ପାଇଁ ତାଙ୍କୁ ଯଥେଷ୍ଟ ପରିଶ୍ରମ କରିବାକୁ ପଡ଼ିଥିଲା । ଏହି ପରିଶ୍ରମ ତାଙ୍କ ମନୋବଳକୁ ବଢ଼ାଇବା ସଙ୍ଗେ ସଙ୍ଗେ ତାଙ୍କୁ ଭବିଷ୍ୟତରେ ଏକ ବଳିଷ୍ଠ ତଥା ଉଦାର ବ୍ୟକ୍ତି ଭାବରେ ପ୍ରତିଷ୍ଠିତ କରିବାରେ ସହାୟକ ହୋଇଥିଲା । ରେଭେନ୍ସା କଲେଜର ଓଡ଼ିଆ ସମ୍ମାନ ଶ୍ରେଣୀର ସ୍ନାତକ ଛାତ୍ରଥିବାବେଳେ ସେ ତେଲେଙ୍ଗା ବଜାରରେ ଥିବା ଏକ ଅନାମଧେୟ ହୋଟେଲର ପଛପଟେ ଥିବା ଗୋଟିକିଆ ଘରେ ଭଡ଼ାରେ ରହୁଥିଲେ । ୧୯୫୦ରେ ଓଡ଼ିଆ ସମ୍ମାନ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀ ଲାଭ କରି ସେ ସ୍ନାତକ ଉପାଧି ହାସଲ କରିବା ପରେ ସେହି ରେଭେନ୍ସା କଲେଜର ସ୍ନାତକୋତ୍ତର ଓଡ଼ିଆ ଶ୍ରେଣୀରେ ନାମ ଲେଖାଇଲେ । ୧୯୫୨ ମସିହାରେ ସେ ଦ୍ୱିତୀୟ ଶ୍ରେଣୀ ଲାଭ କରି ଉତ୍ତୀର୍ଣ୍ଣ ହେଲେ ।

୧୯୫୨ ଛାତ୍ର ଆନ୍ଦୋଳନ ସମୟରେ କୃଷ୍ଣଚରଣ ଓଡ଼ିଶାର ରାଜନୀତି ସହିତ ଘନିଷ୍ଠ ଭାବରେ ଜଡ଼ିତ ହୋଇଥିଲେ । ପାଠପଢ଼ା ଶେଷ ଓ ପରୀକ୍ଷା ଫଳ ବାହାରିବା ପୂର୍ବରୁ ସେ ଜଗତସିଂହପୁର ନିକଟସ୍ଥ କାଦୁଅପଡ଼ାର ଗାଦିବ୍ରହ୍ମ ବିଦ୍ୟାପୀଠରେ ୩ । ୪ ମାସ ଶିକ୍ଷକତା କରିଥିଲେ । ପରେ ୧୯୫୨ ଡିସେମ୍ବର ମାସରେ ସେ ଅଧ୍ୟାପକ ଚାକିରିରେ ଯୋଗଦେବା ପାଇଁ ରାଞ୍ଚିଗଲେ । ଓଡ଼ିଆ ଅଧ୍ୟାପକ କୃଷ୍ଣଚରଣ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହକରି ଯଥେଷ୍ଟ ଅଭିଜ୍ଞତାଅର୍ଜନ କରିଥିଲେ । ରେଭେନ୍ସାରେ ପଢୁଥିବାବେଳେ ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ ପ୍ରଭୃତିଙ୍କର ବ୍ୟକ୍ତିତ୍ୱ ତାଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ତାଙ୍କର ବନ୍ଧୁ ସଂଖ୍ୟା ଯଥେଷ୍ଟ ହେଲେ ହେଁ ସେମାନଙ୍କ ମଧ୍ୟରୁ ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି, ପଦାର୍ଥ ବିଜ୍ଞାନ ପ୍ରଫେସର ବିଭୂତି ଭୂଷଣ ଦେଓ, ଭୂଗୋଳବିତ୍ ପ୍ରଫେସର ବିଚିତ୍ରାନନ୍ଦ ସିହ୍ନା, ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର ପୂର୍ବତନ ଅଧ୍ୟକ୍ଷ ନୃତ୍ୟ ବିଶାରଦା ଡଃ ମିନତି ମିଶ୍ର, ବିଶିଷ୍ଟ ଐତିହାସିକ ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ, ମହୀଶୂରସ୍ଥ ଭାରତୀୟ ଭାଷାବିଜ୍ଞାନ ସଂସ୍ଥାନର ପୂର୍ବତନ ଅଧ୍ୟକ୍ଷ ପଦ୍ମଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ ଓ ଓଡ଼ିଆ ବିଭାଗର ଅବସରପ୍ରାପ୍ତ ପ୍ରଫେସର ଶ୍ରୀମତି ସାବିତ୍ରୀ ଦେବୀଙ୍କର ବିଶେଷ ସମ୍ପର୍କରେ ଆସିଥିଲେ । ତତ୍କାଳୀନ ଶିକ୍ଷାସହିତ ସଂପୃକ୍ତ ପ୍ରାୟ ପ୍ରତ୍ୟେକ ବିଶିଷ୍ଟ ବିଦ୍ୱାନଙ୍କ ସଂସ୍ପର୍ଶରେ ସେ ଆସିଛନ୍ତି ।

## ଦିଗ୍ ଦର୍ଶକ ପ୍ରାପ୍ତି

ଶିକ୍ଷକ ଜୀବନରେ ଦିଗ୍‌ଦର୍ଶକ ପ୍ରାପ୍ତି ଏକ ସାମାନ୍ୟ ଘଟଣା ମାତ୍ର ନୁହେଁ । ଉପଯୁକ୍ତ ଦିଗ୍‌ଦର୍ଶନ ଜଣେ ଶିକ୍ଷକଙ୍କୁ କିଭଳି ସ୍ୱର୍ଣ୍ଣମଣିରେ ରୂପାନ୍ତରିତ କରିଦିଏ ତାର ଉଦାହରଣ

ହେଉଛନ୍ତି କୃଷ୍ଣଚରଣଙ୍କର ଦିଗ୍‌ଦର୍ଶକ ମହାମନା ଆଚାର୍ଯ୍ୟ ଫାଦର କାମିଲ ବୁଲକେ । ବେଲ୍‌ଜିୟମ ଦେଶର ଏହି ମହାନ୍ ଶାସ୍ତ୍ରଜ୍ଞ ପଣ୍ଡିତଙ୍କ ସଂସ୍ପର୍ଶରେ ଆସି କୃଷ୍ଣଚରଣଙ୍କ ଭିତରେ ଥିବା ଗବେଷଣାଲିପ୍‌ସା ଜାଗ୍ରତ ହୋଇ ପାରିଥିଲା । ପ୍ରଥମଥର ଗବେଷଣା ସଂକ୍ରାନ୍ତରେ ତାଙ୍କୁ ସାକ୍ଷାତ କରିବାକୁ ଯାଇ ଯୁବକ କୃଷ୍ଣଚରଣ ବିଫଳ ମନୋରଥ ହୋଇ ଫେରିଥିଲେ । ପରବର୍ତ୍ତୀ କାଳରେ ଉଭୟେ ରାମକଥା ସଂପର୍କୀୟ ଦୀର୍ଘ ଆଲୋଚନା କରିଥିଲେ । ବର୍ଷୀୟାନ ବୁଲକେ ସାହେବ ହୁଏତ ଏହି ଯୁବକ ଭିତରେ ନିଜର ସ୍ୱପ୍ନ ସାକାର ହେଉଥିବା ଲକ୍ଷ୍ୟ କରିଥିଲେ । କୃଷ୍ଣଚରଣ ବୁଲକେ ସାହେବଙ୍କର ଅଧ୍ୟୟନ ନିଷ୍ଠା ଓ ଏକାଗ୍ରତାରୁ ହିଁ ନିଜ ଜୀବନ ଗଢ଼ିବାପାଇଁ ଗଭୀର ଆତ୍ମବିଶ୍ୱାସ ଖୋଜି ପାଇଥିଲେ ।

ପ୍ରକୃତରେ ତାଙ୍କର ପିଏଚ୍‌ଡ଼ି ସନ୍ଦର୍ଭ ଦାଖଲ କରିବା ପୂର୍ବରୁ ସେ ମହାଶୟ ଇହଧାମ ତ୍ୟାଗ କରିସାରିଥିଲେ । ସେ ପିଏଚ୍‌ଡି ନିବନ୍ଧର ଗୋଟିଏ ଅଧ୍ୟାୟ ମାତ୍ର ସଂଶୋଧନ କରିଥିଲେ । ପରବର୍ତ୍ତୀକାଳରେ କୃଷ୍ଣଚରଣ ନିଜେ ଏହାକୁ ସଂପୂର୍ଣ୍ଣ କରିଥିଲେ ଯାହାର ଶୀର୍ଷକଥିଲା **Oriya Rama Literature** । ଏହା ଇଂରାଜୀରେ ଲିଖିତ ହୋଇଥିଲା । ଡଃ କରୁଣାକର କର ଓ ଡଃ କୁଞ୍ଜ ବିହାରୀ ତ୍ରିପାଠୀଙ୍କ ଭଳି ବିଦ୍ୱାନ ପଣ୍ଡିତଦ୍ୱୟ ଏହାର ପରୀକ୍ଷକ ଥିଲେ । ରାଞ୍ଚିରେ ଅବସ୍ଥାନ କାଳରେ କୃଷ୍ଣଚରଣ ନିର୍ଦ୍ଦିଷ୍ଟ ରାଜନୀତିକ ମତବାଦରେ ବିଶ୍ୱାସ କରୁଥିଲେ । ତାହା ଥିଲା ଡଃ ରାମମନୋହର ଲୋହିଆଙ୍କ ଦ୍ୱାରା ପ୍ରବର୍ତ୍ତିତ ସମାଜବାଦୀ ଭାବଧାରା । ଜୟପ୍ରକାଶ ନାରାୟଣଙ୍କ ରାଜନୀତିକ ଚିନ୍ତାଧାରା ମଧ୍ୟ ତାଙ୍କୁ ଯଥେଷ୍ଟ ଅନୁପ୍ରାଣିତ କରିଥିଲା । କିନ୍ତୁ ଏହି ରାଜନୀତିକ ଦିଗଟି ପ୍ରତି ସେ ବିଶେଷ ଆଗ୍ରହ ପ୍ରକାଶ କରିପାରି ନ ଥିଲେ । ଫାଦର ବୁଲ୍‌କେଙ୍କ ନିରଳସ ବ୍ୟକ୍ତିତ୍ୱଦ୍ୱାରା ପ୍ରଭାବିତ କୃଷ୍ଣଚରଣ ନେତୃତ୍ୱ ପ୍ରତି ବୀତସ୍ପୃହ ହୋଇ ଗବେଷକ ଭାବରେ ହିଁ ସାଫଲ୍ୟ ଅର୍ଜନ କରିଛନ୍ତି ଓ ଓଡ଼ିଆ ସାହିତ୍ୟର ବିସ୍ମୃତ ରତ୍ନରାଜିକୁ ଉଦ୍ଧାର କରିଛନ୍ତି ।

## ଅଧ୍ୟାପକ ଓ ପ୍ରଶାସକ କୃଷ୍ଣଚରଣ

୧୯୫୨ ଡିସେମ୍ବର ୧୮ ତାରିଖରେ ରାଞ୍ଚିରେ ଚାକିରି ଜୀବନ ଆରମ୍ଭ କରିଥିବା କୃଷ୍ଣଚରଣ ୧୯୬୪ରେ ବିଶ୍ୱଭାରତୀ, ଶାନ୍ତିନିକେତନର ଓଡ଼ିଆ ବିଭାଗର ମୁଖ୍ୟଭାବରେ ଯୋଗଦାନ କରିଥିଲେ । ଦୁଇବର୍ଷ ପରେ ସେ ପୁନର୍ବାର ରାଞ୍ଚି ଫେରିଗଲେ । ୧୯୬୬ରୁ ୧୯୭୧ ଜୁଲାଇ ୫ ତାରିଖ ପର୍ଯ୍ୟନ୍ତ ସେ ରାଞ୍ଚିରେ ଅବସ୍ଥାନ କରିଥିଲେ । ୧୯୭୧ ଜୁଲାଇ ମାସରେ ସେ ପ୍ରଧ୍ୟାପକ ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଯୋଗଦେଇଥିଲେ । ୧୯୮୫ରେ ପ୍ରଫେସର ହୋଇ ୧୯୮୯ ପର୍ଯ୍ୟନ୍ତ ବିଭାଗୀୟ ମୁଖ୍ୟ ଦାୟିତ୍ୱ ସଂପାଦନ କରିଥିଲେ । ୧୯୮୯ ଅପ୍ରେଲ ୩୦ ତାରିଖରେ ସେ ଅବସର ଗ୍ରହଣ କରି ନିଜକୁ ସଂପୂର୍ଣ୍ଣ ରୂପେ ଅଧ୍ୟୟନ, ସଂପାଦନା, ସର୍ବୋପରି ଗବେଷଣା କାର୍ଯ୍ୟରେ ବିନିଯୁକ୍ତ

କଲେ । ରାଞ୍ଚି ବିଶ୍ୱବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକ ଭାବରେ କୃଷ୍ଣଚରଣ ନିଜର ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିପାରିଥିଲେ । ଅନେକ ପରୀକ୍ଷାର୍ଥୀ ତାଙ୍କୁ ଅଭିଭାବକ ତୁଲ୍ୟ ସମ୍ମାନ ଦେଉଥିଲେ ଓ ନିଜ ନିଜ ସମସ୍ୟାର ସମାଧାନ ପାଇଁ ତାଙ୍କର ସାହାଯ୍ୟ ଲୋଡୁଥିଲେ । ତତ୍‌କାଳୀନ କେତେକ ନାମୀ ଛାତ୍ର ପରୀକ୍ଷା ନିୟନ୍ତ୍ରକଙ୍କୁ ବହୁବାର ଅସୁବିଧାରେ ପକାଇବାକୁ ଇଚ୍ଛାକରି ବିଫଳ ହୋଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ସେ ଛାତ୍ରାବାସମାନଙ୍କର ୱାର୍ଡେନ, ତତ୍ତ୍ୱାବଧାରକ (Superintdent) ତଥା ପରିଚ୍ଛା ପାଠାଗାରର ଦାୟିତ୍ୱ ବହନ କରି ଅତ୍ୟନ୍ତ ସଫଳତାର ସହିତ କାର୍ଯ୍ୟ ନିର୍ବାହ କରିଥିଲେ । ତାଙ୍କ ସମୟରେ ଛାତ୍ରାବାସଗୁଡ଼ିକର ନାମକରଣ ହୋଇଥିଲା ଓ ସେଥିରେ କାର୍ଯ୍ୟରତ କର୍ମଚାରୀମାନଙ୍କର ଦରମା ମଧ୍ୟ ବୃଦ୍ଧିପାଇଥିଲା । ୧୯୮୨ (ASIAD) ଖେଳ ସମୟରେ ତାଙ୍କରି ପ୍ରଚେଷ୍ଟାରେ ଛାତ୍ରାବାସ ସମ୍ମୁଖରେ ମଧୁସୂଦନ ଦାସଙ୍କର ଆବକ୍ଷ ମୂର୍ତ୍ତି ସ୍ଥାପିତ ହୋଇଥିଲା । ଡଃ ରାଧାନାଥ ରଥ (ସମାଜର ସଂପାଦକ) ସେହି ମୂର୍ତ୍ତି ଛାତ୍ରମାନଙ୍କୁ ଉପହାର ଦେଇଥିଲେ ଓ ମୂର୍ତ୍ତି ସ୍ଥାପନ ଉତ୍ସବରେ ପୌରୋହିତ୍ୟ ମଧ୍ୟ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଛାତ୍ରସଂସଦର ଉପଦେଷ୍ଟା ଭାବରେ ସେ ନିଜର କର୍ତ୍ତବ୍ୟ ସୁଚାରୁ ରୂପେ ସଂପାଦନ କରିଥିଲେ । ୧୯୮୯ ମସିହାରେ ଅବସର ଗ୍ରହଣ କରିବା ପରେ ସେ ଏକ ବର୍ଷ ପାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ପରିଦର୍ଶକ ପ୍ରଫେସରର ଦାୟିତ୍ୱ ନିର୍ବାହ କରିଥିଲେ ।

## ମୌଳିକ ସ୍ରଷ୍ଟା କୃଷ୍ଣଚରଣ

କେବଳ ଆଲୋଚକ, ସଂପାଦକ ବା ପ୍ରାବନ୍ଧିକ ଭାବରେ ନୁହେଁ, ମୌଳିକ ସ୍ରଷ୍ଟା ଭାବରେ ମଧ୍ୟ କୃଷ୍ଣଚରଣଙ୍କର ପ୍ରତିଷ୍ଠା ଯଥେଷ୍ଟ । ତାଙ୍କର ପ୍ରାୟ ଅର୍ଦ୍ଧଶତାଧିକ କବିତା ଅପ୍ରକାଶିତ ଅବସ୍ଥାରେ ରହିଛି । ରାଞ୍ଚି କଲେଜ ମୁଖପତ୍ରରେ ପ୍ରାୟ ୧୯୫୧ - ୫୨ରେ ତାଙ୍କର ଏକ କବିତା ' ବୋଧପ୍ରିୟା' ପ୍ରକାଶିତ ହୋଇ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ପାରିଥିଲା । ଡଃ ସାହୁ ରାଞ୍ଚି ଯିବା ପୂର୍ବରୁ ଦୁଇଟି ଉପନ୍ୟାସ ଲେଖି ଛପାଇବା ପାଇଁ କଟକ ଟ୍ରେଡ଼ିଂ କମ୍ପାନୀକୁ ଦେଇଥିଲେ । ତନ୍ମଧ୍ୟରୁ ଗୋଟିକର ନାମ ଥିଲା ' ନୀଳ କମଳ ' । ପ୍ରକାଶକଙ୍କ ସହିତ ଯୋଗାଯୋଗ ଅଭାବରୁ ସେ ଦୁଇଟି ପ୍ରେସ୍‌ରୁ ହଜିଗଲା । ପ୍ରାୟ ୪।୫ ବର୍ଷ ତଳେ ସେ 'ରଙ୍ଗାବତାର' ଶୀର୍ଷକ ଏକ ପୂର୍ଣ୍ଣାଙ୍ଗ ଉପନ୍ୟାସ ଲେଖିଛନ୍ତି । ଏହି ଉପନ୍ୟାସର ନାୟକ ହେଉଛନ୍ତି ଶ୍ରୀକୃଷ୍ଣ । ଏହା ଏକ ସୁଖପାଠ୍ୟ ଉପନ୍ୟାସ । ତାଙ୍କର ' କାରାଗାର' ଶୀର୍ଷକ ନାଟକ କଟକ ଆକାଶବାଣୀ ଆନୁକୂଲ୍ୟରେ ପ୍ରସାରିତ ହୋଇଛି ।

ରମ୍ୟରଚନା କ୍ଷେତ୍ରରେ ମଧ୍ୟ ତାଙ୍କର ପ୍ରତିଭା ଅବିସମ୍ବାଦିତ । ଓଡ଼ିଆ ସାହିତ୍ୟରେ ' ମାର୍ଜାର ', 'ଥକା ମନ ଚାଲିଯିବା ', ' ସୁରଙ୍ଗ, ଅଧର ଟହ ଟହ ହସେ ', ' ମର ମର ପଣ୍ଡିତ ମରମ ଯେ ମିଠା' ଭଳି ରମ୍ୟରଚନା ତାଙ୍କର ବହୁ ପାଣ୍ଡିତ୍ୟ ତଥା ଶାସ୍ତ୍ର ଜ୍ଞାନର

ପରିଚୟ ପ୍ରଦାନ କରିଥାଏ । ପୌରାଣିକ ଘଟଣାବଳୀକୁ ସାଂପ୍ରତିକତାର ଛାଞ୍ଚରେ ଢାଳି ପାଠକକୁ ଆକର୍ଷିତ କରିବାର କଳା ତାଙ୍କୁ ଜଣା । ତେଣୁ ପୁରାଣକୁ ସାଂପ୍ରତିକ ଜୀବନ ସହିତ ଏକାତ୍ମକରି ପାଠକକୁ ସେ ଆକୃଷ୍ଟ କରିପାରନ୍ତି ।

## ସମାଲୋଚକ କୃଷ୍ଣଚରଣ

ସୃଷ୍ଟିଶୀଳ ସମାଲୋଚନା (Creative Criticism) କ୍ଷେତ୍ରରେ ଡଃ ସାହୁଙ୍କର କୃତିତ୍ୱ ମଧ୍ୟ ଦୃଷ୍ଟି ଆକର୍ଷଣକାରୀ । ଗତାନୁଗତିକ ଧାରାରୁ ଓହରି ଆସି ନୂତନ ଆଭିମୁଖ୍ୟ ନେଇ ପ୍ରାଚୀନ ସାହିତ୍ୟର ଆଲୋଚନା କରିବା ତାଙ୍କର ସ୍ୱାତନ୍ତ୍ର୍ୟ । ତାଙ୍କର ପ୍ରବନ୍ଧଗୁଡ଼ିକର ଭାଷା ସରଳ, ଅକୃତ୍ରିମ ଓ ଆକର୍ଷଣୀୟ । ଏଥିରେ ପୁନରାବୃତ୍ତି ବା ଅତିକଥନର କ୍ଳାନ୍ତି ନଥାଏ, ବରଂ ପାଠକକୁ ଆଗ୍ରହୀ କରାଇବାର ଶକ୍ତି ସାମର୍ଥ୍ୟ ରହିଥାଏ । ସେ ରବୀନ୍ଦ୍ର ନାଥ, I.A. Richards ଓ T.S. Eliotଙ୍କର ସମାଲୋଚନା ପଦ୍ଧତିଦ୍ୱାରା ବହୁ ଭାବରେ ଅନୁପ୍ରାଣିତ । ରବୀନ୍ଦ୍ରଙ୍କର ଅନ୍ତର୍ଦୃଷ୍ଟି, Richards ଙ୍କର Practical Criticism ଓ Eliotଙ୍କର ବିଶ୍ୱଜନୀନ ଭାବଧାରା ତାଙ୍କର ସମାଲୋଚନା ସାହିତ୍ୟକୁ ଏକ ଉଦାର ଦୃଷ୍ଟିଭଙ୍ଗୀ ପ୍ରଦାନ କରିଛି । କୃଷ୍ଣଚରଣ ଓଡ଼ିଆ ଏମ୍. ଏ. ର ଛାତ୍ରଥିବା ସମୟରେ, ସେ ସମୟରେ ଉପଲବ୍ଧ ପ୍ରତ୍ୟେକ ଇଂରାଜୀ ସମାଲୋଚନା ପୁସ୍ତକ ଅଧ୍ୟୟନ କରି ସାରିଥିଲେ । ଏଥିପାଇଁ ସେ ତାଙ୍କର ଶ୍ରଦ୍ଧେୟ ପ୍ରଫେସର ବିଧୁଭୂଷଣ ଦାସଙ୍କ ନିକଟରେ ଋଣୀ ବୋଲି ବାରମ୍ବାର କହନ୍ତି । ୧୯୫୧ ରେ ତାଙ୍କର ପ୍ରଥମ ସମାଲୋଚନା 'ଅଚ୍ୟୁତାନନ୍ଦଙ୍କ ସାହିତ୍ୟରେ ଓଡ଼ିଶା ଓ ଓଡ଼ିଶାର ଜୀବନଧାରା' ରେଭେନ୍ସାଭିୟାନ୍‌ରେ ପ୍ରକାଶିତ ହୋଇଥିଲା । ଯାହା ବର୍ତ୍ତମାନ ପର୍ଯ୍ୟନ୍ତ ତାଙ୍କର କୌଣସି ପ୍ରବନ୍ଧ ସଂକଳନରେ ସ୍ଥାନିତ ହୋଇନାହିଁ । **Literature and Social Life in Mediaeval Orissa** (୧୯୭୧), **କହେ କୃଷ୍ଣଦାସ କବି** (୧୯୭୬), **ପ୍ରାଚୀନ ସାହିତ୍ୟ** (୧୯୮୨), **ମଧ୍ୟକାଳୀନ ସାହିତ୍ୟ** (୧୯୮୩), **କବି ବଳରାମ ଦାସ** (୧୯୮୮) ପ୍ରଭୃତି ତାଙ୍କର ସମାଲୋଚନା ଗ୍ରନ୍ଥ । ସାରଳାଦାସଙ୍କଠାରୁ ଆରମ୍ଭ କରି ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ସାହିତ୍ୟିକ ଓ ସାଂସ୍କୃତିକ ଜୀବନଧାରା ସମ୍ପର୍କରେ ତାଙ୍କର ବିଚାର ବିମର୍ଷ ପାଠକକୁ ମୁଗ୍ଧ କରିଥାଏ । ପଞ୍ଚଦଶ ଓ ଷୋଡ଼ଶ ବିଶେଷକରି ଜଗନ୍ନାଥ, ବଳରାମ ଅଚ୍ୟୁତାନନ୍ଦ ପ୍ରଭୃତିଙ୍କର ସାହିତ୍ୟ, ୧୬ଶ ଶତାବ୍ଦୀର ନରସିଂହ ସେଣ, ରଘୁ ଅରକ୍ଷିତ, ରସାନନ୍ଦ, ନବଘନ ଚାନ୍ଦ, ୧୭ଶ, ଓ ୧୮ଶ ଶତାବ୍ଦୀର ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁଙ୍କ ସାହିତ୍ୟ ଉପରେ ସେ ଗଭୀର ଓ ବ୍ୟାପକ ଅଧ୍ୟୟନ କରିଛନ୍ତି । **ପ୍ରାଚୀନ ସାହିତ୍ୟ** ପୁସ୍ତକରେ ସେ ୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ ଛଅ ଜଣ ବିଶିଷ୍ଟ କବିଙ୍କର ସାହିତ୍ୟକୃତି ସମ୍ପର୍କରେ ଆଲୋଚନା କରିଛନ୍ତି । ଅଚ୍ୟୁତାନନ୍ଦ, ବଳରାମ ଦାସ, ଜଗନ୍ନାଥ ଦାସ ଓ ନରସିଂହ ସେଣଙ୍କ ସମ୍ପର୍କରେ ବିଚାର କରିବା ସହିତ **ଅମରକୋଷ**, **ରୁଦ୍ର ସୁଧାନିଧି**, **ବେଦାନ୍ତସାର ଗୁପ୍ତଗୀତା** ପ୍ରଭୃତି ପୁସ୍ତକ ସମ୍ପର୍କରେ ବିଶେଷ ଆଲୋଚନା କରିଛନ୍ତି ।

**ମଧ୍ୟକାଳୀନ ସାହିତ୍ୟ** ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁ ସାହିତ୍ୟର **ବୈଶିଷ୍ଟ୍ୟ ଆକଳନ** କରିବା ସହିତ ତତ୍‌କାଳୀନ ଅନେକ ପ୍ରତିଭାଶାଳୀ ମାତ୍ର ବିସ୍ମୃତ କବିଙ୍କୁ ବିସ୍ମୃତି ଗର୍ଭରୁ ଉଦ୍ଧାର କରି ସାହିତ୍ୟର ଇତିହାସରେ ସ୍ଥାନିତ କରିଛନ୍ତି । ଯଥା, ଗୋକୁଳ ମାନ୍ଧାତା, ସୁଦର୍ଶନ ଦାସ, ମହାଦେବ ଦାସ, ନରହରି ମହାପାତ୍ର (ଆକବରଙ୍କ ସଭା ପଣ୍ଡିତ ), ପରମାନନ୍ଦ ଦାସ ପ୍ରଭୃତି । **କହେ କୃଷ୍ଣଦାସ କବି** ଏକ ଉଲ୍ଲେଖଯୋଗ୍ୟ ସମାଲୋଚନା ଗ୍ରନ୍ଥ । ଲେଖକଙ୍କର ଗବେଷଣା ପ୍ରବୃତ୍ତି ତଥା ଗୋଟିଏ ସମୟକୁ ଭିନ୍ନ ଭାବରେ ଦେଖିବାର ଆଗ୍ରହ ଏଥିରେ ଏକୀଭୂତ ହୋଇଯାଇଛି । କାବ୍ୟକଳା ଦୃଷ୍ଟିରୁ **ରସକଲ୍ଲୋଳ**ର ସ୍ୱତନ୍ତ୍ର ମୂଲ୍ୟାୟନ; ଭାଷା, ଶୈଳୀ ଭକ୍ତି ଭାବନା ପ୍ରଭୃତି ଦୃଷ୍ଟିକୋଣରୁ **ରସକଲ୍ଲୋଳର** ଏତାଦୃଶ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର । **କବି ବଳରାମ ଦାସ** ପୁସ୍ତକରେ ୧୬ଶ ଶତାବ୍ଦୀର ଓଡ଼ିଆ ଜନଜୀବନ ତଥା ବଳରାମଙ୍କର ସ୍ୱାତନ୍ତ୍ର୍ୟର ଆଲୋଚନା କରାଯାଇଛି ।

ଓଡ଼ିଆ ଭାଷାକୁ ଅପଭ୍ରଂଶରୁ ମୁକ୍ତକରି ଦେଶର ଭାଷାରେ କବିତା ରଚନା କରିଥିବା କବି ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଓ ନରସିଂହ ସେଣ ପ୍ରଭୃତି ସଂସ୍କୃତ ଭାଷାକୁ ଯଥେଷ୍ଟ ମର୍ଯ୍ୟାଦା ପ୍ରଦାନ କରିଥିଲେ । ସେମାନଙ୍କର ଧାରଣାଥିଲା ଯେ ଏହାଦ୍ୱାର ସାଧାରଣ ଜନତା ତାଙ୍କର କାବ୍ୟ କବିତାକୁ ଆଦର କରିବେ । କିନ୍ତୁ ସେମାନେ ପଣ୍ଡିତମାନଙ୍କଦ୍ୱାରା ଗୃହୀତ ହେଲେ ନାହିଁ । ତଥାପି ଉଦାରପନ୍ଥୀ ଅଚ୍ୟୁତାନନ୍ଦ **ଚାରିଖାନି** ବା ଶବ୍ଦବ୍ରହ୍ମ ସଂହିତାରେ କହିଲେ-

ସଂସ୍କୃତ ପରାକୃତ ଦୁଇସମସରି
କେବଳ ଗୋବିନ୍ଦ ନାମ ଅମୃତ ମାଧୁରୀ ।

ଏସମସ୍ତ ବିଷୟ ସମାଲୋଚକ କୃଷ୍ଣଚରଣ ସାମାଜିକ ପୃଷ୍ଠଭୂମିରେ ଉପସ୍ଥାପିତ କରିଛନ୍ତି । କବି ଉପେନ୍ଦ୍ରଙ୍କର ଅଳଙ୍କାର ପଟୁତା, ସୁଫୀ ଭାବଧାରାର ପ୍ରଭାବ, ମୁସଲମାନୀ ଭାବନା, ରାମକଥାର ବିକାଶରେ ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ଓ **ବିଦଗ୍ଧଚିନ୍ତାମଣି**ର ବୈଚିତ୍ର୍ୟ ପ୍ରଭୃତି ସଂପର୍କରେ ସେ ଗବେଷଣାତ୍ମକ ପ୍ରବନ୍ଧ ପ୍ରସ୍ତୁତ କରିଛନ୍ତି ।

## ସଂପାଦକ କୃଷ୍ଣଚରଣ :

ପତ୍ରପତ୍ରିକା ସଂପାଦନା କ୍ଷେତ୍ରରେ କୃଷ୍ଣଚରଣ ନିଜର ବୈଶିଷ୍ଟ ପ୍ରଦର୍ଶନ କରିଛନ୍ତି । 'ପ୍ରଜ୍ଞା'ପତ୍ରିକାର ସଂପାଦନା ମଣ୍ଡଳୀ ସହିତ ସଂପୃକ୍ତ ଡଃ ସାହୁ ପ୍ରଚୀନ ସାହିତ୍ୟର ଆଧୁନିକ ଯୁଗୋପଯୋଗୀ ଆଲୋଚନା ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲେ । ପ୍ରଜ୍ଞାଗୋଷ୍ଠୀ ସତୁରି ଦଶକରେ ନିଜ ପାଇଁ ଏକ ସ୍ୱତନ୍ତ୍ର ତଥା ସମ୍ମାନଜନକ ଆସନ ସୃଷ୍ଟି କରିପାରିଥିଲେ । ଏହି ଗୋଷ୍ଠୀର ଆଲୋଚକମାନଙ୍କ ମଧ୍ୟରେ ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫେସର ଯତୀନ୍ଦ୍ରମୋହନ ମହାନ୍ତି, ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । 'ପ୍ରଜ୍ଞା' ସେ ସମୟରେ

ଗୁରୁ ପ୍ରସାଦ ମହାନ୍ତି, ଭାନୁଜୀ ରାଓ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର ଜଗନ୍ନାଥ ପ୍ରସାଦ ଦାସ,ସୌରୀନ୍ଦ୍ର ବାରିକ, ଚିତ୍ତରଞ୍ଜନ ଦାସ, ଶରତ କୁମାର ମହାନ୍ତି, ଦୁର୍ଗାଚରଣ କୁଅଁର, ବଂଶୀଧର ଷଡ଼ଙ୍ଗୀ ପ୍ରଭୃତିଙ୍କର ଆଲୋଚନା ଓ ସାହିତ୍ୟକୃତିକୁ ଅଗ୍ରାଧିକାର ଦେଇଥିଲା । 'ପ୍ରାଚୀନ' ନାମକ ସମୟିକ ସାହିତ୍ୟ ପତ୍ରିକା ର ସଂପାଦନା କୃଷ୍ଣଚରଣଙ୍କର ସାହିତ୍ୟ ପ୍ରୀତିର ଅନ୍ୟତମ ନିଦର୍ଶନ । ବିଭିନ୍ନ ଆଲୋଚିତ ସାହିତ୍ୟକୃତି ତଥା ସାହିତ୍ୟିକମାନଙ୍କ ସଂପର୍କରେ ଗବେଷଣାଧର୍ମୀ ପ୍ରବନ୍ଧ ପ୍ରକାଶ କରି ସେ ଏକ ଆଗ୍ରହୀ ପାଠକଗୋଷ୍ଠୀ ସୃଷ୍ଟି କରାଇ ପାରିଥିଲେ । ପ୍ରାଚୀନ ସାହିତ୍ୟର ବିଭିନ୍ନ ଦିଗର ଆଲୋଚନା ସହିତ ଏଥିରେ ଏକ 'ପୁସ୍ତକସମୀକ୍ଷା' ପର୍ଯ୍ୟାୟ ରହିଥିଲା, ଯେଉଁଥିରେ ପ୍ରକାଶିତ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପୁସ୍ତକର ସମୀକ୍ଷା ସ୍ଥାନିତ ହେଉଥିଲା ।

ପୋଥି ସଂପାଦନ କ୍ଷେତ୍ରରେ କୃଷ୍ଣଚରଣ 'ପ୍ରାଚୀସମିତି'ର ପ୍ରାଣ ପ୍ରତିଷ୍ଠାତା ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପଦାଙ୍କ ଅନୁସରଣ କରିଛନ୍ତି । ପ୍ରାଚୀନ ଅପ୍ରକାଶିତ ପୋଥିମାନଙ୍କର ପାଠୋଦ୍ଧାର କରି ଦୀର୍ଘ ମୁଖବନ୍ଧ ସହିତ ପ୍ରକାଶ କରିବା ତାଙ୍କର ସାହିତ୍ୟ ସାଧନାର ଏକ ବିଶିଷ୍ଟ ଦିଗ । ଏଦିଗରେ ପ୍ରଫେସର ବଂଶୀଧର ମହାନ୍ତି ତାଙ୍କର ଅନ୍ୟତମ ପଥପ୍ରଦର୍ଶକ ବୋଲି ସେ ବାରମ୍ବାର ସ୍ୱୀକାର କରିଛନ୍ତି ।

ବିଭିନ୍ନ ସ୍ଥାନ ବୁଲି ପୋଥି ସଂଗ୍ରହ କରିବା ଏକ ଆୟାସସାଧ କାର୍ଯ୍ୟ । ଏଥିପାଇଁ କୃଷ୍ଣଚରଣଙ୍କୁ ଅନେକ ସମୟରେ କିଛି ଅନୁକୂଳ ବାତାବରଣ ସୃଷ୍ଟିକରି ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇବାକୁ ପଡ଼ିଛି । ପୋଥି ସଂଗ୍ରହପରେ ସେଗୁଡ଼ିକ କାଗଜରେ ନକଲ କରିବା ମଧ୍ୟ ଆଉ ଏକ କଷ୍ଟ ସାଧ କାର୍ଯ୍ୟ । ଏସବୁକୁ ଏକତ୍ର କରି ଶୁଦ୍ଧପାଠ ନିର୍ଣ୍ଣୟ କରିବା ତାଠାରୁ ଆହୁରି କଠିନ । ଏଥିପାଇଁ ସେହି ସମୟର ରାଜନୈତିକ ଓ ସାମାଜିକ ପରିସ୍ଥିତି ପ୍ରତି ଦୃଷ୍ଟି ନିକ୍ଷେପ କରିବା ପାଇଁ ହୋଇଥାଏ । ସର୍ବୋପରି ପୋଥିର ପ୍ରାଚୀନତା, ପରିବାର ନିର୍ଣ୍ଣୟ, ଶୁଦ୍ଧ ଅଶୁଦ୍ଧ ଓ ବିଚ୍ୟୁତି ପ୍ରଭୃତିକୁ ବିଚାର କରିବାକୁ ହୋଇଥାଏ । ବିଭ୍ରାନ୍ତି, ଲୋପ ଓ ବୃଦ୍ଧି ପ୍ରାଚୀନ ପୋଥିର ଦୁର୍ବଳତା । ଅନେକତ୍ର ଲିପିକାରମାନେ ମୂଳଶବ୍ଦ ବୁଝି ନ ପାରି ତତ୍କାଳୀନ ପ୍ରଚଳିତ ପ୍ରିୟ ଶବ୍ଦର ଅନୁପ୍ରବେଶ କରାଇଥାଆନ୍ତି । କେତେକ ଶବ୍ଦ ବାରମ୍ବାର ବ୍ୟବହାର ହୋଇଥିବା ଲକ୍ଷ୍ୟକରି କେତେକ ପଦ ଛାଡ଼ି ଦେଇଥିବା ମଧ୍ୟ ଦେଖାଯାଏ । ମୂଳପୋଥିରେ ବିବାହ, ପ୍ରେମ, ନାରୀରୂପ ବର୍ଣ୍ଣନା, ନଗର ବା ଋତୁ ବର୍ଣ୍ଣନା ପ୍ରଭୃତି ଅଳ୍ପ ଥିଲେହେଁ ଲିପିକାରମାନେ ନିଜର ଆଗ୍ରହ ଏଡ଼ାଇ ନପାରି ମନରୁ ନୂତନ ପଦମାନ ସଂଯୋଜନା କରି ନକଲର କଳେବର ବୃଦ୍ଧି କରିଥାଆନ୍ତି । ଏକ ପ୍ରକାର ଏକାଧିକ ପୋଥିକୁ ତୁଳନାତ୍ମକ ଭାବରେ ବିଚାର କଲେ ଏହି ବିଚ୍ୟୁତି ଆଖିରେ ପଡ଼େ । ସଂଗୃହୀତ ଅନୁଲିପିଗୁଡ଼ିକୁ ଏକତ୍ର କରି କାଳାନୁକ୍ରମରେ ସଜାଇ ସତର୍କତାର ସହ ପ୍ରାମାଣିକ ଲିପି ପ୍ରସ୍ତୁତ କରିବାକୁ ହୋଇଥାଏ । ଡ଼ଃ ସାହୁ ଏହ କ୍ଲାନ୍ତିକର ମନେହେଉଥିବା କଠିନ ଶ୍ରମ ଆଗ୍ରହ ସହିତ ସମଗ୍ର ଜୀବନ ଧରି

କରି ଚାଲିଥିଲେ । ତାଙ୍କର ଶ୍ରମ ଓ ସମୟର ସାର୍ଥକ ଫଳଶ୍ରୁତି ହେଉଛି **ସାରଳା ମହାଭାରତ ଆଦିପର୍ବ** (୧୯୮୧), **ଉଦ୍ଧାବ ଗୀତା** (୧୯୮୧) **ଧର୍ମଗୀତା** (୧୯୮୧), **ଶ୍ରୀମଦ୍ ଭଗବତ** (୧୯୮୧), **ରାସ ପଞ୍ଚାଧ୍ୟାୟୀ** (୧୯୮୨), **ଚାରିଖାନି** (୧୯୮୨), **ପ୍ରାଚୀନ କାବ୍ୟଧାରା** (୧୯୮୨), **ପରିମଳା** (୧୯୮୩), **ଜଗମୋହନ ରାମାୟଣ** (୧୯୮୩), **ରୁଦ୍ରସୁଧାନିଧି** (୧୯୮୩), **ଚଣ୍ଡୀପୁରାଣ** (୧୯୮୪), **ବ୍ରହ୍ମାଣ୍ଡ ଭୂଗୋଳ** (୧୯୮୬), **ଗୋବିନ୍ଦଚନ୍ଦ୍ର** (୧୯୮୬), **ଚଉପଦୀ ଭୂଷଣ ଓ ଅନ୍ୟାନ୍ୟ କବିତା** (୧୯୮୪), ଓ **ନୃସିଂହ ପୁରାଣ** ପ୍ରଭୃତି ।

ଡଃ ସାହୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C) ଓ ରାଜ୍ୟସରକାରଙ୍କ ସହାୟତାରେ **ହରିବଂଶ** ସଂପାଦନା କାର୍ଯ୍ୟ ମଧ୍ୟ ସଂପନ୍ନ କରିଛନ୍ତି । ୧୬ଶ ଶତାବ୍ଦୀର ବିଶିଷ୍ଟ ଗ୍ରନ୍ଥ **ହରିବଂଶ** ମହାପୁରୁଷ ଅଚ୍ୟୁତାନନ୍ଦଙ୍କଦ୍ୱାରା ରଚିତ । ଏହାର ପଚାଶ ଖଣ୍ଡ ପୋଥି ସଂଗୃହୀତ ହୋଇ ଶୁଦ୍ଧପାଠ ପ୍ରସ୍ତୁତ କରାଯାଇଛି । ଡଃ ସାହୁ ନିଜର ସଂପାଦିତ ଗ୍ରନ୍ଥ ଗୁଡ଼ିକରେ ଗବେଷଣା ପ୍ରସୂତ ଦୀର୍ଘ ମୁଖବନ୍ଧ ସମନ୍ୱିତ କରି ଗବେଷକମାନଙ୍କର କାର୍ଯ୍ୟକୁ ସହଜ କରିଛନ୍ତି । **ରୁଦ୍ରସୁଧାନିଧି, ପରିମଳା, ସାରଳା ମହାଭାରତ** (ଆଦିପର୍ବ), **ଚଣ୍ଡୀ ପୁରାଣ** ପ୍ରଭୃତିର ମୁଖବନ୍ଧ ଗ୍ରନ୍ଥଗୁଡ଼ିକର ଶ୍ରୀବୃଦ୍ଧି କରିବାରେ ସହାୟକ ହୋଇଛି କାରଣ ଏହାହିଁ ତାଙ୍କର ଅନୁଶୀଳନ ତଥା ବିଶ୍ଳେଷଣ ପଦ୍ଧତିର ସ୍ୱକୀୟତା ନମୁନା ବହନ କରିବା ସଙ୍ଗେସଙ୍ଗେ ତାଙ୍କ ଅର୍ନ୍ତଦୃଷ୍ଟି ଏବଂ ଗବେଷଣା ଲବ୍ଧ ଜ୍ଞାନର ଗଭୀରତାକୁ ଉଦ୍‌ଘୋଷିତ କରିଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରୁ ଅବସର ନେବାପରେ ମଧ୍ୟ ସେ ପୋଥି ସଂପାଦନା ଓ ପ୍ରକାଶ କାର୍ଯ୍ୟରେ ବ୍ୟସ୍ତ ରହିଥିଲେ । ପାଠ୍ୟ ପୁସ୍ତକ ନ ହୋଇପାରିଲେ ଯେ ପୁସ୍ତକ ମୁଦ୍ରିତ ହେବା କଷ୍ଟସାଧ ଏହି ମନ୍ତବ୍ୟକୁ ସେ ନିଜେ ଭ୍ରମାତ୍ମକ ବୋଲି ପ୍ରମାଣ କରିଛନ୍ତି । ଦୀନକୃଷ୍ଣଙ୍କର ଅପ୍ରକାଶିତ **ଚଉପଦୀଭୂଷଣ ଓ ଅନ୍ୟାନ୍ୟ କବିତା** ସେ ୧୯୯୪ରେ ପ୍ରକାଶ କରିଛନ୍ତି । ନିକଟ ଅତୀତରେ (ମାର୍ଚ୍ଚ ୧୭, ୧୯୯୬ ) ସେ ବଳରାମ ଦାସଙ୍କର **ଜଗମୋହନ ରାମାୟଣର** ବହୁ ପ୍ରତୀକ୍ଷିତ ପ୍ରମାଣିକରୂପକୁ ଲୋକଲୋଚନକୁ ଆଣିବା ପାଇଁ ସମର୍ଥ ହୋଇଛନ୍ତି ।

ପୋଥି ସଂପାଦନା ପାଇଁ ଅଭିରୁଚି, ଲିପି ସଂପର୍କୀୟ ଜ୍ଞାନ, ଭାଷା ଓ ଇତିହାସ ସଂପର୍କୀୟ ଜ୍ଞାନ, ବିବେକ, ଶାରୀରିକ କ୍ଷମତା, ଆର୍ଥିକ ନିଶ୍ଚିତତା, ମାନସିକ ଶାନ୍ତି ଓ ସଂପାଦନ ବିଧି ସଂପର୍କରେ ବିଶେଷ ଜ୍ଞାନ ଆବଶ୍ୟକ । ସର୍ବୋପରି ଯଶ ଲାଳସା ବା ସହଳ ପ୍ରଶଂସା ଏହି କ୍ଷେତ୍ର ପାଇଁ ଅନୁପଯୋଗୀ । ଦୀର୍ଘ ସାଧନାର ଫଳ ସ୍ୱରୂପ ଗୋଟିଏ ପୁସ୍ତକକୁ ଗୋଟିଏ ସମୟର ପ୍ରତିନିଧି ଭାବରେ ପ୍ରତିପାଦନ କରାଯାଇପାରେ । ଡଃ ସାହୁ ଏହି କଷ୍ଟକର କାର୍ଯ୍ୟଟିକୁ ବ୍ୟକ୍ତିଗତ ଆଗ୍ରହ ଓ ଜାତି ଉଦ୍ଦେଶ୍ୟରେ ନିଜର କର୍ତ୍ତବ୍ୟ ମନେକରି ସଂପାଦନ କରିଛନ୍ତି ।

## ଇଂରାଜୀ ଭାଷାରେ ଦକ୍ଷ ପ୍ରବନ୍ଧିକ କୃଷ୍ଣଚରଣ

କୃଷ୍ଣଚରଣ ବି.ଏ ଶ୍ରେଣୀର ଛାତ୍ର ଥିବାବେଳେ ସେ ସମୟରେ ଉପଲବ୍ଧ ଅଧିକାଂଶ

ଇଂରାଜୀ ସମାଲୋଚନା ତଥା ପ୍ରବନ୍ଧ ପୁସ୍ତକ ପାଠ କରିଥିଲେ । ତାଙ୍କର ପି.ଏଚ୍.ଡି ସନ୍ଦର୍ଭ ମଧ୍ୟ ଇଂରାଜୀ ଭାଷାରେ ଲିଖିତ । ସେ ଇଂରାଜୀ ଭାଷାରେ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ସେ ମଧ୍ୟରୁ କେତୋଟି ହେଉଛି : The Saura Tradition in Hindu Ramayana, Ornaments in Medieval Orissa, Ramakatha in Sarala Mahavarata, Marriage Customs in Medieval Orissa, Portrayal of Oriya Social Life in Sarala Das, An Account of Kabir in Oriya Literature, Rama Literature in Orissa and its influence on Indonesia, Oriya Rama literature and its relations with Rama Katha of other Indian languages,The date of Sarala Mahavarat. ପ୍ରଭୃତି । ଏଗୁଡ଼ିକ ସର୍ବଭାରତୀୟ ସ୍ତରର ପତ୍ରିକା ପ୍ରଭୃତିରେ ପ୍ରକାଶିତ । ଏ ପ୍ରବନ୍ଧଗୁଡ଼ିକର ଭାଷା ସୁବୋଧ । ନୂତନ ଦୃଷ୍ଟିଭଙ୍ଗୀ ନେଇ ରଚିତ ଏହି ପ୍ରବନ୍ଧଗୁଡ଼ିକ ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଶାର ଜନଜୀବନକୁ ସର୍ବଭାରତୀୟ ତଥା ଆନ୍ତର୍ଜାତିକ ସ୍ତରରେ ଠିକ୍ ଭାବରେ ଉପସ୍ଥାପିତ କରିପାରିଛି । ପ୍ରତ୍ୟେକ ପ୍ରବନ୍ଧରେ ସମାଜତାତ୍ତ୍ୱିକ ଧାରାଟିଏ ଆଲୋଚିତ, ଯାହା ସାହିତ୍ୟକୁ ତାର ପୃଷ୍ଠଭୂମିରେ ଦୃଢ଼ଭାବରେ ଦଣ୍ଡାୟମାନ ରଖିବାରେ ସମର୍ଥ ହୋଇଥାଏ । ଇଂରାଜୀ ଭାଷାରେ ବହୁସଂଖ୍ୟକ ପ୍ରବନ୍ଧ ଲେଖି, ଦେଶ ବିଦେଶର ପାଠକଙ୍କ ଓ ସଂପାନରେ ଭାଗ ନେଇ ଡଃ ସାହୁ ନିଜ ପାଇଁ ଏକ ସମ୍ମାନଜନକ ସ୍ଥାନ ସୃଷ୍ଟି କରିଛନ୍ତି ।

## ଆଧୁନିକ ଓଡ଼ିଆ ସାହିତ୍ୟ ସମାଲୋଚକ କୃଷ୍ଣଚରଣ

କେବଳ ପ୍ରାଚୀନ ମଧ୍ୟକାଳୀନ ବା ପୋଥି ସଂପାଦନ କ୍ଷେତ୍ରରେ ଯେ କୃଷ୍ଣଚରଣଙ୍କର ସାଧନା ରହିଛି ତାହା ନୁହେଁ, ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗ ଉପରେ ସେ ନିଜ ଦୃଷ୍ଟିରୁ ବିଶେଷ ଆଲୋଚନା କରିଛନ୍ତି । 'ବିଷବୃକ୍ଷ ଓ ଛମାଣ ଆଠଗୁଣ୍ଠ,' 'କାମପାଳ ମିଶ୍ରଙ୍କର ହରିଶ୍ଚନ୍ଦ୍ର,' 'ଓଡ଼ିଆ ସାହିତ୍ୟର ଇତିହାସ ଓ ଡଃ ମାୟାଧର ମାନସିଂହ,' 'ଆଦ୍ୟ ସମୀକ୍ଷକ ପଣ୍ଡିତ ନୀଳକଣ୍ଠ,' 'ପରକଲମ ଏକ ବିଶ୍ଳେଷଣ,' 'ସୀତାବିବାହ,' 'କାଞ୍ଚିକାବେରୀ', 'ମାର୍କସବାଦ ଓ ମାଟିମଟାଳ', 'ଗୁରୁପ୍ରସାଦ ଓ ସମୁଦ୍ରସ୍ନାନ', 'ହରେରାମକୃଷ୍ଣ ଓ କାଠଘୋଡ଼ା', 'ଆରଣ୍ୟଫସଲ' , 'ଭାତ', 'ମନୋରଞ୍ଜନଙ୍କ ଶବ୍ଦଲିପି', 'ଆଚାର୍ଯ୍ୟ ପ୍ୟାରୀମୋହନ' ଭଳି ଏକାଧିକ ଆଧୁନିକ ପ୍ରବନ୍ଧରେ ଡଃ ସାହୁଙ୍କର ବୈଶିଷ୍ଟ୍ୟର ଛାପ ବାରିହୋଇପଡ଼େ । ତାଙ୍କର ସମାଲୋଚନାର ଦୃଷ୍ଟିଭଙ୍ଗୀ ଶାଣିତ । ଆଧୁନିକ ସାହିତ୍ୟ ଜଗତର ବିଚିତ୍ର ବର୍ଣ୍ଣ ବିଭାମଣ୍ଡିତ ବିଭିନ୍ନ ଉଲ୍ଲେଖନୀୟ ଦିଗପ୍ରତି କୃଷ୍ଣଚରଣ ଧ୍ୟାନ ଦେଇଛନ୍ତି ।

ଏହା ସହିତ ତାଙ୍କର ବିଶେଷତ୍ୱ ହେଉଛି ଯେ ତାଙ୍କର ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀ ସର୍ବଦା ଆଧୁନିକ । ସହଜ ସରଳ ସର୍ବଜନବୋଧ ଭାଷାରେ ଜଟିଳ ଦର୍ଶନ ତତ୍ତ୍ୱ ଉପସ୍ଥାପନା ରୀତିରେ ସେ ନିଜର ସମାଲୋଚନାକୁ ସ୍ୱତନ୍ତ୍ର କରିବାରେ ଧୁରନ୍ଧର । ଗୁରୁପ୍ରସାଦଙ୍କ

**ସମୁଦ୍ରସ୍ନାନ**ର ଆଲୋଚନାରେ ଯେଉଁ ନୂତନ ଦୃଷ୍ଟିକୋଣର ପରିଚୟ ନିହିତ, ସେଥିରେ ପ୍ରାଚୀନ ପୋଥିର ସଂପାଦକ ବା ପ୍ରାଚୀନ ସାହିତ୍ୟର ଗବେଷକ କୃଷ୍ଣଚରଣଙ୍କ ମୁଖ ଦିଶେନାହିଁ । ବିଶ୍ୱସାହିତ୍ୟର ଅଗ୍ରଗତି ତଥା ପରିବର୍ତ୍ତନ ପ୍ରତି ସଜାଗ ଦୃଷ୍ଟି ରଖିଥିବା ଏକ ଆଧୁନିକ ଚିନ୍ତାଶୀଳ ମଣିଷର ଛବି ଦିଶିଥାଏ । ଏହା ହିଁ ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚକ କୃଷ୍ଣଚରଣଙ୍କର ବୈଶିଷ୍ଟ୍ୟ ।

## ଗବେଷଣାର ଦିଗ୍‌ଦର୍ଶକ ଭାବରେ କୃଷ୍ଣଚରଣ

ସାହିତ୍ୟରେ ଗବେଷଣା ସର୍ବଦା ନିଷ୍ଠା ଓ ଅଧ୍ୟବସାୟର ସମ୍ମିଳିତ ପ୍ରକାଶ । ଓଡ଼ିଆ ସାହିତ୍ୟକୁ ସ୍ୱତନ୍ତ୍ରତା ମିଳିବାର ଦୀର୍ଘ ଦିନପରେ ଏହା ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହେଲା । ୧୯୬୯ରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ପାଠ୍ୟକ୍ରମ ଆରମ୍ଭ ହୋଇଥିଲା । ୧୯୭୧ରେ ଡଃ ସାହୁ ଓଡ଼ିଶା ଆସିବାରେ ଏହି ପାଠ୍ୟକ୍ରମର ବୈଶିଷ୍ଟ୍ୟ ଉପଲବ୍ଧ ହେଲା ।

ତାଙ୍କ ଅଧୀନରେ ତୁଳନାତ୍ମକ ସାହିତ୍ୟ ସଂପର୍କୀୟ ଗବେଷଣା କରାଯାଇଛି । ଏତଦ୍‌ବ୍ୟତୀତ ସାମାଜିକ ଓ ସାଂସ୍କୃତିକ ଦୃଷ୍ଟି କୋଣରୁ ସାରଳାମହାଭାରତରେ ସମାଜଜୀବନ, ଜଗମୋହନ ରାମାୟଣରେ ସମାଜ ଜୀବନ, ମଧ୍ୟକାଳୀନ ସାହିତ୍ୟରେ କୃଷ୍ଣ ଚେତନା, ଅଚ୍ୟୁତାନନ୍ଦଙ୍କ ହରିବଂଶରେ ଓଡ଼ିଆ ଜୀବନଧାରା ପ୍ରଭୃତି ଉଲ୍ଲେଖ ଯୋଗ୍ୟ । ମଧ୍ୟକାଳୀନ ସାହିତ୍ୟ ପାରାବାରରେ ଅବଗାହନ କରିଥିବା ଡଃ ସାହୁ ଯଶୋବନ୍ତ ଦାସ, ନରସିଂହ ସେଣ, ନୀଳାମ୍ବର ଦାସ, ଓଡ଼ିଆ ସମ୍ବୋଧ କାବ୍ୟ, ଶିଶୁ ଅନନ୍ତ ଦାସ ପ୍ରଭୃତି ସ୍ରଷ୍ଟା ପୁରୁଷଙ୍କ କୃତି ଓ କୃତିତ୍ୱ ସଂପର୍କରେ ଗବେଷଣା କରାଇଛନ୍ତି । ଭାଷା କ୍ଷେତ୍ରରେ ତାଙ୍କର ଦକ୍ଷତା ରହିଥିବା ଜଣାଯାଏ । ଆଧୁନିକ ସାହିତ୍ୟ କ୍ଷେତ୍ରରେ ରୋମାଣ୍ଟିସିଜିମ୍ ଓଡ଼ିଆ ଐତିହାସିକ ଉପନ୍ୟାସ, ନାଟ୍ୟକାର ମନୋରଞ୍ଜନ ଦାସ, ବାସୁଦେବ ମହାପାତ୍ର, ଗୋପୀନାଥ ମହାନ୍ତି, ଓଡ଼ିଆ କ୍ଷୁଦ୍ରଗଳ୍ପ, ଗଣକବି ବୈଷ୍ଣବ ପାଣି, ଓଡ଼ିଆ କବିତାରେ ବାସ୍ତବବାଦ ତଥା ଅଖିଳମୋହନ ପଟ୍ଟନାୟକଙ୍କ କ୍ଷୁଦ୍ରଗଳ୍ପକୁ ନେଇ ଗବେଷଣା କରାଇଛନ୍ତି ।

## ପୁରସ୍କାର, ମାନପତ୍ର ଉପାୟନ

ସମଗ୍ର ଜୀବନ ଓଡ଼ିଆ ସାହିତ୍ୟର ଗୌରବ ପ୍ରତିଷ୍ଠା ପାଇଁ ନିରଳସ ଉଦ୍ୟମ କରିଥିବା ଏହି ବର୍ଷୀୟାନ ସାଧକ ସେଭଳି ଉଲ୍ଲେଖଯୋଗ୍ୟ ସମ୍ମାନ ପାଇନାହାନ୍ତି ବୋଲି କହିଲେ ହୁଏତ ସତ୍ୟର ଅପଳାପ ହେବ । ସେ ୧୯୮୨ରେ ପ୍ରବନ୍ଧ ପାଇଁ ପ୍ରଜାତନ୍ତ୍ରର 'ବିଷୁବ ପୁରସ୍କାର' ପାଇଛନ୍ତି । ୧୯୮୬ରେ ନୀଳକଣ୍ଠ ସ୍ମୃତି କମିଟିଦ୍ୱାରା 'ନୀଳକଣ୍ଠ ପୁରସ୍କାର'ଓ ମାନପତ୍ର

ଲାଭ କରିଛନ୍ତି । ୧୯୮୬ରେ ସେ ସାରଳା ସାହିତ୍ୟର ଗବେଷଣା ପାଇଁ ସାରଳା ସାହିତ୍ୟ ସଂସଦ ତରଫରୁ 'ସାରଳା ସମ୍ମାନ' ଲାଭ କରିଛନ୍ତି । ୧୯୯୬ରେ ଡଃ ସାହୁ ଭୁବନେଶ୍ୱର କେଦାରନାଥ ଗବେଷଣା ପ୍ରତିଷ୍ଠାନଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି । ୧୯୯୬ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ ମାଲକାନଗିରି ସାହିତ୍ୟ ସଂସଦର ମିଳିତ ଉଦ୍ୟମରେ ତାଙ୍କୁ ସମ୍ମାନିତ କରାଯାଇଛି । ପ୍ରଗତି ଉତ୍କଳ ସଂଘ, ରାଉରକେଲାଦ୍ୱାରା ମଧ୍ୟ ସେ ନିଜର ଜୀବନବ୍ୟାପୀ ସାହିତ୍ୟ ସାଧନା ପାଇଁ ସମ୍ମାନିତ ହୋଇଛନ୍ତି ।

ଏତଦ୍‌ବ୍ୟତୀତ ବାଲେଶ୍ୱରର ବାର୍ତ୍ତା ଅନୁଷ୍ଠାନ, ଭୁବନେଶ୍ୱରର ଶତଦ୍ରୁ ସାହିତ୍ୟ ଅନୁଷ୍ଠାନ ପ୍ରଭୃତି ଡଃ ସାହୁଙ୍କୁ ସମ୍ବର୍ଦ୍ଧିତ କରିଛନ୍ତି । ସାହିତ୍ୟ କ୍ଷେତ୍ରରେ ପୁରସ୍କାର ବା ମାନପତ୍ର ଲେଖକର ଆଗ୍ରହ ବୃଦ୍ଧି କରିଥାଏ । ତାକୁ ଅଧିକ ସାହିତ୍ୟ ସାଧନା ପାଇଁ ଉତ୍ସାହିତ କରିଥାଏ । ମାତ୍ର କୃଷ୍ଣ ଚରଣ ସେ ସବୁ ପ୍ରତି ଆସକ୍ତ ନଥିଲେ । ତାଙ୍କ ମତରେ ପୁରସ୍କାର ପ୍ରଦାନ କରି ଲେଖକର ଉତ୍ସାହ ବୃଦ୍ଧି କରିବା ଉଚିତ; ମାତ୍ର ସାହିତ୍ୟରେ ପୁରସ୍କାର ପ୍ରାପ୍ତି ପାଇଁ ବିଭିନ୍ନ ଚକ୍ରାନ୍ତ ଓ କୁତ୍ସା ଯେଉଁ ଭଳି ନ ରହେ ତାର ଚେଷ୍ଟା କରାଯିବା ଦରକାର । ପୁରସ୍କୃତ ପ୍ରତିଭା ଯେପରି ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିବାର ସୁଯୋଗ ପାଇବ ସେଥିପାଇଁ ପ୍ରଚେଷ୍ଟା କରାଯିବା ଆବଶ୍ୟକ । ଅନ୍ୟଥା ସାହିତ୍ୟ ଓ ସମାଲୋଚନା ଉଭୟ କ୍ଷେତ୍ର ପ୍ରଦୂଷିତ ହେବାର ଆଶଂକା ରହିଛି । ଯଦି ପୁରସ୍କୃତ ପ୍ରତିଭାଟି ବନ୍ଧୁମାନଙ୍କର କୁତ୍ସା ବା ଅସହିଷ୍ଣୁତାର ଶିକାର ହୁଏ, ସେଭଳି ପୁରସ୍କାର ନ ମିଳିବା ବରଂ ଭଲ ; ପୁରସ୍କୃତ ହେବା ଅର୍ଥ ଅନ୍ୟଠାରୁ ମର୍ଯ୍ୟାଦାବନ୍ତ ହେବା, ଅନ୍ୟର ଅସୂୟାର ପାତ୍ର ହେବା ନୁହେଁ ।

## ଜାତୀୟ ତଥା ପ୍ରାଦେଶିକ ସମ୍ମିଳନୀମାନଙ୍କରେ ଯୋଗଦାନ

ଡଃ ସାହୁ ଭାରତୀୟ କାଉନ୍‌ସିଲ୍, କଲିକତାର ସଭ୍ୟ । ଆନ୍ତର୍ଜାତିକ ରାମାୟଣ ଅଧ୍ୟୟନ ସଂସ୍ଥାର ନିର୍ଦ୍ଦେଶନାମଣ୍ଡଳୀର ଅନ୍ୟତମ ସହଯୋଗୀ ସଭ୍ୟ । ସେ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର, ସମ୍ବଲପୁର, ବିଶ୍ୱଭାରତୀ ତଥା ରାଞ୍ଚି ବିଶ୍ୱବିଦ୍ୟାଳୟ ସହିତ ବହୁଭାବରେ ସଂପୃକ୍ତ । ଉଜ୍ଜୟିନୀର କାଳିଦାସ ସମାରୋହ, ଆନ୍ତର୍ଜାତୀୟ ରାମାୟଣ ସଂପାନ, ନୂଆଦିଲ୍ଲୀ, **Seminar on Lexieography** ଅଭିଧାନ ପ୍ରଣୟନ ସଂପର୍କୀୟ ଭାଷାତତ୍ତ୍ୱର ଗ୍ରୀଷ୍ମକାଳୀନ ଶିବିର ପାଠ୍ୟକ୍ରମ, ମହୀଶୂର, ଉତ୍ତର ପ୍ରଦେଶର ସାଂସ୍କୃତିକ ବିଭାଗ ତରଫରୁ ଆୟୋଜିତ ରାମାୟଣ ସଂପାନ, କେନ୍ଦ୍ର ସାହିତ୍ୟ ଏକାଡ଼େମୀଦ୍ୱାରା ମଣିପୁରରେ ଆୟୋଜିତ ପୂର୍ବଭାରତୀୟ ରାମାୟଣ ସଂପର୍କୀୟ ସେମିନାର, କେନ୍ଦ୍ରସାହିତ କୋଡେମୀ, ଓ ଆସାମ ସାହିତ୍ୟ ସଭାର ମିଳିତ ଆନୁକୂଲ୍ୟରେ ଆସାମର ଜୋରହାଟରେ ଆୟୋଜିତ ଅମ୍ବିକା ପ୍ରସାଦ ମେମୋରିଆଲ ଜାତୀୟବାଦୀ ଆନ୍ଦୋଳନ ଶୀର୍ଷକ ସେମିନାରରେ ସେ ଯୋଗ ଦେଇଛନ୍ତି ଓ ପ୍ରବନ୍ଧପାଠ କରିଛନ୍ତି । ସେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C)ର ଭାଷା

ଉପଦେଷ୍ଟା ମଣ୍ଡଳୀର ସଭ୍ୟ, କେନ୍ଦ୍ରସାହିତ୍ୟ ଏକାଡ଼େମୀର ଭାଷା ଉପଦେଷ୍ଟା ମଣ୍ଡଳୀର ସଭ୍ୟ ତଥା ଅନେକ ପ୍ରାଦେଶିକ ସାହିତ୍ୟ ସଭାମାନଙ୍କ ସହିତ ସଂପୃକ୍ତ ରହିଥିଲେ ।

## ଜୀବନାନୁଭୂତି ଓ କୃଷ୍ଣଚରଣ

ଅନେକ ପାରିବାରିକ ଦାୟ ସତ୍ୱେ ଡଃ ସାହୁ ଏକ ଅନାସକ୍ତ ସନ୍ୟାସୀର ଜୀବନ ଅତିବାହିତ କରିଛନ୍ତି । ସଂସାରରେ ଥାଇ ସେ ସର୍ବଦା ଉଦାସୀନ । ଗବେଷଣା ଓ ସଂପାଦନାକୁ ନେଇ ତାଙ୍କର ଏକକ ସଂସାରଟିଏ ନିରବରେ ଏହିପରି ଦୃଶ୍ୟମାନ ସଂସାର ଅନ୍ତରାଳରେ ଗତିଶୀଳ । ସେ ନିରଳସ କର୍ମଯୋଗୀ । କିନ୍ତୁ କର୍ମ ଅନୁସାରେ ଫଳ ନପାଇ ସେ ବାରମ୍ବାର ଭାଗ୍ୟବାଦୀ ପାଲଟିଯାଆନ୍ତି । ତାଙ୍କ ଦୃଷ୍ଟିରେ ସମଗ୍ର ମାନବଜୀବନ ଦୁଃଖମୟ । ସାମୟିକ ସୁଖ ଲାଭର ଆଶାରେ ମନୁଷ୍ୟ କର୍ମ କରେ ମାତ୍ର ଛୋଟ ଛୋଟ ସୁଖ ବୃହତ୍ତର ଦୁଃଖ ପାଇଁ ବାଟ କଢ଼ାଇଦିଏ । ତୋଷାମଦ ଓ ମିଥ୍ୟା ତଥା କପଟାଚାରର ସେ ଘୋର ଶତ୍ରୁ । ଶ୍ରେଣୀଗୃହରେ ଶିକ୍ଷାଦାନ ତାଙ୍କପାଇଁ ଏକ ଆନନ୍ଦମୟ ଅନୁଭୂତି । ତାପରେ ଗବେଷକମାନଙ୍କୁ ଯଥାଶକ୍ତି ସାହାଯ୍ୟ କରିବା ତାଙ୍କର ଦିନଚର୍ଯ୍ୟାର ଏକ ଅଂଶ । ଦୁଃଖସୁଖକୁ ସମଜ୍ଞାନ କରି କର୍ମ କରିଯିବା ତାଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ । ଯେତେବେଳେ ଶାରୀରିକ ଅସୁସ୍ଥତା ତାଙ୍କ ଗବେଷଣାରେ ବାଧାଦୃଷ୍ଟି କଲା ସେ ବାଧହୋଇ ନିଜକୁ ଗଦାଗଦା ତାଳପତ୍ର ପୋଥିର ରାଇଜରୁ ମୁକ୍ତକଲେ, ଚିକିତ୍ସକମାନଙ୍କର ବିଭିନ୍ନ ପରୀକ୍ଷା ନିରୀକ୍ଷାରେ ସହଯୋଗ କରିବାପାଇଁ । ପରିଶେଷରେ ଅଭିଜ୍ଞ ଚିକିତ୍ସକଙ୍କଦ୍ୱାରା ତାଙ୍କ ଶରୀରରେ ଅସ୍ତ୍ରୋପଚାର କରାଯାଇଥିଲା ୨୩ । ୩ ।୯୭ ଗୁରୁବାର ଦିନ । ନର୍ସିଂହୋମ୍‌ର ଶଯ୍ୟାଉପରେ ଶୋଇ ସେ ଦୃଢ଼ କଣ୍ଠରେ କହୁଥିଲେ, ଏବେ ଆଉ କଷ୍ଟ ନାହିଁ । ପରେ ଯାହା ହବ ହବ । ମୁଁ ଶୀଘ୍ର ଘରକୁ ଫେରି ମୋର ଅସଂପୂର୍ଣ୍ଣ କେତେଗୁଡ଼ିଏ କାମ କରିବି ।

ଲିଙ୍ଗରାଜ ମନ୍ଦିର ପାଖରେ ବିଭୀଷଣେଶ୍ୱର ମନ୍ଦିରନିକଟସ୍ଥ ନିଜର ବାସଗୃହକୁ ସେ ଫେରିଥିଲେ ତା ୪ । ୪। ୯୭ରିଖ ଶୁକ୍ରବାର ଦିନ । କିନ୍ତୁ ସମସ୍ତଙ୍କୁ ଚକିତ କରି ସେଇ ଘରେ ସ୍ତୁପୀକୃତ ପୋଥିମାନଙ୍କ ଗହଣରେ ଆଉ ଗୋଟିଏ ନୂଆ ପୋଥି ହୋଇ ସେ ହଜିଗଲେ ରବିବାର ତା ୬-୪-୯୭ରିଖ ଦିନ । ପୁରୀ ସ୍ୱର୍ଗଦ୍ୱାର ଦେଇ ତାଙ୍କ ଆତ୍ମା ଯେ ବୈକୁଣ୍ଠକୁ ଯାଇଛି ଏଥିରେ ସନ୍ଦେହ ନାହିଁ । କିନ୍ତୁ ଓଡ଼ିଆ ପୋଥିପାଠ ଯୁଗର ଯେ ଅବସାନ ଘଟିଲା ସେକଥା ସ୍ୱୀକାର କରିବାରେ ଦ୍ୱିଧା ନାହିଁ । ତେବେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଯେଉଁ ଅମୂଲ୍ୟରତ୍ନରାଜିର ଉଦ୍ଧାର ଏବଂ ତର୍ଜମା ସେ କରିଯାଇଛନ୍ତି ତାହା ଓଡ଼ିଆ ସାହିତ୍ୟର ଇତିହାସରେ ଚିର ଉଜ୍ଜ୍ୱଳ ହୋଇ ରହିବ ।

**ସଂଘମିତ୍ରା ମିଶ୍ର**

# ପ୍ରଥମ ପରିଚ୍ଛେଦ

## ଷୋଡ଼ଶ ଶତାବ୍ଦୀର ସାହିତ୍ୟିକ ଚେତନା

ସାରଳା ଦାସଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟର ରୂପରେଖ କ'ଣ ଥିଲା ଜାଣିବା ସହଜ ନୁହେଁ । ତେବେ ଅନୁମାନ କରାଯାଇପାରେ ଯେ ଏ ଦେଶରେ ସହଜଯାନୀ ଓ ନାଥପନ୍ଥୀ ସାଧକମାନଙ୍କର ରଚନା ହିଁ ପ୍ରଚଳିତ ଥିଲା । ସେତେବେଳେ ଓଡ଼ିଆ ଭାଷାର ପ୍ରକୃତ ରୂପ ସ୍ଥିର ହୋଇପାରି ନ ଥିଲା । କିନ୍ତୁ ସାରଳା ମହାଭାରତରେ ଓ ପରେ ବଳରାମ, ଜଗନ୍ନାଥ, ଯଶୋବନ୍ତ, ଅଚ୍ୟୁତ ଓ ଅନନ୍ତଙ୍କ ଲେଖାରେ ଯେଉଁ ଶକ୍ତି ଓ ସାମର୍ଥ୍ୟ ପ୍ରକାଶ ପାଇଲା, ତାହା ମଧ୍ୟ ବିଦ୍ୟୁତର ଅଚାନକ ସ୍ଫୁରଣପରି ଓଡ଼ିଶାର ସାହିତ୍ୟାକାଶକୁ ଆଲୋକିତ କରି ନ ଥିଲା । ବହୁପୂର୍ବରୁ ଏଥିପାଇଁ ଲୋକମନରେ ଆକାଶର କୃଷ୍ଣ ମେଘଖଣ୍ଡ ପରି ଭାଷା ଓ ସାହିତ୍ୟର ସ୍ୱରୂପ ଘନୀଭୂତ ହୋଇ ରହିଥିଲା ।

ସାରଳାଦାସ ଓଡ଼ିଆ ସାହିତ୍ୟର ଆଦିକବି ହେଲେ ହେଁ ସେ ରଚନା କରିଥିଲେ କେବଳ ପୁରାଣ । ଓଡ଼ିଆ ସାହିତ୍ୟର ଆଙ୍ଗିକ ବିବିଧତା ତାଙ୍କ ସୃଷ୍ଟ ରଚନାବଳୀରେ ପରିଲକ୍ଷିତ ହୁଏ ନାହିଁ ।

ପଞ୍ଚସଖା ହିଁ ପ୍ରଥମେ ଓଡ଼ିଆ ସାହିତ୍ୟକୁ ବିଭିନ୍ନ ରୂପରେ ସଜ୍ଜିତ କଲେ । ସେମାନଙ୍କ ଲେଖନୀରୁ ସୃଷ୍ଟିହେଲା ଅଗଣିତ ପଦ ଓ ପଦାବଳୀ । ସେମାନେ ଲେଖି ଚାଲିଲେ ଗୀତା, ସଂହିତା, କଳ୍ପ, ପରାର୍ଦ୍ଧା, ଟୀକା, ମାଳିକା, ଉପଦେଶ, କୋଇଲି, ଚଉତିଶା, ଭଜନ ଏବଂ ରାମାୟଣ, ଭାଗବତ ଓ ହରିବଂଶ ପରି ବହୁ ପୁରାଣ । କବୀରଙ୍କ ପରି ଯଶୋବନ୍ତ 'ସାକ୍ଷୀ' ଓ ଅଚ୍ୟୁତ 'ଶବଦ' ରଚନା କରିଥିଲେ ହେଁ ପୁଣି ଚର୍ଯ୍ୟାପଦର ଅନୁସରଣରେ କେତେକ କ୍ଷୁଦ୍ର ରହସ୍ୟବାଦୀ କବିତା ଅନଂତ, ଅଚ୍ୟୁତ ଓ ଯଶୋବଂତଙ୍କ ଲେଖନୀରୁ ନିଃସୃତ ହୋଇଥିଲେ ହେଁ, ଯୁଗର ପ୍ରଭାବରେ ସେସବୁ ଧୀରେ ସାହିତ୍ୟ ରାଜ୍ୟରୁ ଅପସରି ଗଲା ଓ ସନ୍ଥ କବିମାନେ ଭକ୍ତଭାବରେ ପରିଚିତ ହେଲେ । ନିର୍ଗୁଣ ସାଧକଙ୍କ ସ୍ଥାନରେ ସଗୁଣ ସାଧକ ଲୋକପ୍ରିୟତା ଅର୍ଜନ କଲେ । ଧର୍ମର ଆତ୍ମାଭାବେ ଜ୍ଞାନର ସ୍ଥାନ ନେଲା ଭକ୍ତି । ଆତ୍ମସଂଯମ ସ୍ଥାନରେ ଭାବାବେଶର ପ୍ରଭାବ ବୃଦ୍ଧି ପାଇଲା । ସାହିତ୍ୟର ଏହି ସନ୍ଧିକାଳରେ ଯେଉଁମାନେ ଲେଖନୀ ଧାରଣ କଲେ, ସେମାନେ ସମସ୍ତେ ନିର୍ଗୁଣ ଓ ସଗୁଣ କଳ୍ପନା ମଧ୍ୟରେ ଧନ୍ଦି ହେଲେ । ଏକପକ୍ଷରେ ଯୋଗାରୂଢ଼ ପରମାତ୍ମା ଓ ଅନ୍ୟ ପକ୍ଷରେ ନରରୂପୀ ନାରାୟଣଙ୍କ ଲୀଳାଗାନ ସେମାନଙ୍କୁ ଭାବାବିଷ୍ଟ କରିଦେଲା । ଏହି ଦୁଇ ଭାବ ମିଶ୍ରଣରେ ଷୋଡ଼ଶ ଶତାବ୍ଦୀ ବିଶେଷକରି ପଞ୍ଚସଖା, ରଘୁ ଅରକ୍ଷିତ, ଭଉଁରୀ ଦାସଙ୍କ ରଚନା ପରିପୁଷ୍ଟ ହୋଇଥିଲେ ହେଁ, ସେମାନଙ୍କ

ଲେଖନୀରୁ ପରବର୍ତ୍ତୀ ଯୁଗର ଅପୂର୍ବ-ରୂପ-ବିଭବ ଅର୍ଥାତ କାବ୍ୟ ସୃଷ୍ଟି ହୋଇ ପାରି ନ ଥିଲା । ଏହି ସୌଭାଗ୍ୟର ଅଧିକାରୀ ହେଲେ, **ରାମ ବିଭା** (ରାମ କାବ୍ୟ) ଓ **କଳ୍ପଲତା** (କାଳ୍ପନିକ କାବ୍ୟ)ର କବି ଅର୍ଜ୍ଜୁନ ଦାସ, **ଗୋପକେଳି** (କୃଷ୍ଣ କାବ୍ୟ) ଓ **ପରିମଳାବତୀ** (କାଳ୍ପନିକ କାବ୍ୟ)ର ରଚୟିତା ନରସିଂହ ସେଣ, **କାଞ୍ଚିକାବେରୀ** (ଐତିହାସିକ କାବ୍ୟ)ର ପ୍ରଣେତା ପୁରୁଷୋତ୍ତମ ଦାସ ଓ **ରୁଦ୍ରସୁଧାନିଧି** (ଗଦ୍ୟ କାବ୍ୟ)ର ଲେଖକ ନାରାୟଣ ଦାସ । ସମାଜରେ **ଗୀତଗୋବିନ୍ଦ**ର ପ୍ରଭାବ ଅତୁଟ ଥିଲା । ଏହାକୁ ଗୀତା ରୂପରେ ରୂପାନ୍ତରିତ କଲେ **ଗୋବିନ୍ଦ ଗୀତା**ର ଲେଖକ ତ୍ରିଲୋଚନ ଦାସ; ନବାକ୍ଷରୀରେ ଅର୍ଥ କଲେ ଧରଣୀଧର ଏବଂ କାବ୍ୟ ରୂପ ଦେଲେ **ରସବାରିଧି**ର ପ୍ରଣେତା ବୃନ୍ଦାବନ ଦାସ । ଏହିପରି ଭାବେ ଷୋଡ଼ଶ ଶତାବ୍ଦୀରେ ରଚିତ ସାହିତ୍ୟ ମଧ୍ୟରୁ ଗୀତା, ସଂହିତା ଓ ଭଜନ ପ୍ରଭୃତିରେ ଜ୍ଞାନମାର୍ଗର ଚର୍ଚ୍ଚା ହୋଇଥିଲେ ହେଁ ଭକ୍ତିଭାବନା ହିଁ ସାହିତ୍ୟର ମୁଖ୍ୟ ସ୍ୱର ଥିଲା । ଭକ୍ତିଭାବନାରେ ଅନୁପ୍ରାଣିତ ହୋଇ କବିମାନେ ଭଗବାନଙ୍କ ଅବତାର ସବୁର ଲୀଳା ଗାନ କଲେ । ସେଥିରେ ମୁଖ୍ୟ ହେଲେ ରାମ ଓ କୃଷ୍ଣ । ସେମାନଙ୍କ ଲୀଳା-ଶ୍ରବଣ ଓ ମନନ ଥିଲା ଭକ୍ତିମାର୍ଗର ପ୍ରଧାନ ସାଧନ । ପୁଣି ବିବିଧ ଲୀଳାରୁ ବିବିଧ ନାମର ଉଦଭବ ହେଲା, ଏବଂ ଏହିସବୁ ନାମଙ୍କୁ ଜପ କୀର୍ତ୍ତନ କରିବାରେ ଭକ୍ତକବିମାନେ ନିଜକୁ ଧନ୍ୟ ମନେକଲେ । କେବଳ ଭଗବାନଙ୍କ ଲୀଳାନୁହେଁ, ଭକ୍ତମାନଙ୍କ ମହିମା ବର୍ଣ୍ଣନା କରିବାପାଇଁ ଗ୍ରନ୍ଥ ପରେ ଗ୍ରନ୍ଥ ରଚିତ ହେଲା । କବିମାନେ ମଧ୍ୟ ଥିଲେ ଭଗବାନଙ୍କ ଅନ୍ତରଙ୍ଗ ସଖାମାନଙ୍କର ଅବତାର ।

ଗୀତା, ସଂହିତା ପ୍ରଭୃତିରେ ଜ୍ଞାନ, ଜ୍ଞାନ ମିଶ୍ରା ଭକ୍ତି ପୁଣି କେବଳ ଭକ୍ତିମାର୍ଗର ଯେଉଁ ଚର୍ଚ୍ଚା ଚାଲିଥିଲା, କାବ୍ୟପାଇଁ ସେସବୁର ଆବଶ୍ୟକତା ହେଲାନାହିଁ । କାବ୍ୟର ଆତ୍ମା ହେଲା ରସ । ଅଳଙ୍କାର ଶାସ୍ତ୍ରର ବିକାଶଯୋଗୁଁ ହେଉ ବା ଯୁଗପ୍ରଭାବରୁ ଆସୁ, ଓଡ଼ିଆ କବିମାନଙ୍କ ଦୃଷ୍ଟିରେ ଏହି ରସ ହେଲା ଶୃଙ୍ଗାର । ରାମ ଓ କୃଷ୍ଣଙ୍କପରି ଅବତାର, ପୁଣି ଅନ୍ୟାନ୍ୟ ସମସ୍ତ ସାଧାରଣ ନାୟକମାନେ ଶୃଙ୍ଗାର ରସର ପ୍ରବକ୍ତା ଭାବେ କାବ୍ୟ ରାଜ୍ୟରେ ଉପସ୍ଥିତ ହେଲେ । ଶୃଙ୍ଗାର ସୁଖ ହେଲା ଇନ୍ଦ୍ରସୁଖ, ଏପରି କି ବିଷ୍ଣୁପଦ ପ୍ରାପ୍ତି ଠାରୁ ଶ୍ରେଷ୍ଠ, କାମିନୀର କେବଳମାତ୍ର ସ୍ପର୍ଶରେ ମୋକ୍ଷ ପଦ ପ୍ରାପ୍ତି ହେଲା । କବିମନର ଏହି ପରିବର୍ତ୍ତନରେ ଗ୍ରନ୍ଥକାରମାନେ ଦୁଇଭାଗରେ ବିଭକ୍ତ ହୋଇଗଲେ । ଗୀତା ସଂହିତା ଲେଖୁଥିବା କବିହେଲେ ସନ୍ଥ, ସାଧକ ବା ଭକ୍ତ; ଏବଂ ରସ କାବ୍ୟର ରଚୟିତାମାନେ ହେଲେ କବି ଯଶର ଅଧିକାରି । ଓଡ଼ିଆ ସାହିତ୍ୟର ପରବର୍ତ୍ତୀ ଅଗ୍ରଗତିରେ ଏହି ଯେଉଁ ପଦଧ୍ୱନି ଶୁଣାଗଲା, ଏହାର ବାସ୍ତବିକ ଆରମ୍ଭ ହୋଇଥିଲା ଷୋଡ଼ଶ ଶତାବ୍ଦୀରେ ।



# ଦ୍ୱିତୀୟ ପରିଚ୍ଛେଦ

# ଷୋଡ଼ଶ ଶତାବ୍ଦୀର ସାହିତ୍ୟିକ ପୃଷ୍ଠଭୂମି

## (୧)

## ସଂସ୍କୃତ

ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଭାଷା ଦେଇ ଓଡ଼ିଆ ଭାଷାର ସୃଷ୍ଟି ହୋଇଥିଲେ ହେଁ, ପଞ୍ଚଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସଂସ୍କୃତ ସାହିତ୍ୟ ହିଁ ଥିଲା ଓଡ଼ିଆ ସାହିତ୍ୟର ମୁଖ୍ୟ ଆଧାର ସ୍ରୋତ । ଓଡ଼ିଆରେ ରଚିତ ହୋଇଥିବା କାବ୍ୟ, କବିତା, ପୁରାଣ, ଟୀକା ଗ୍ରନ୍ଥ, ଆୟୁର୍ବେଦ, ଜ୍ୟୋତିଷ, ଶିଳ୍ପ ଶାସ୍ତ୍ର ପ୍ରଭୃତି ଆସିଥିଲା ସଂସ୍କୃତରୁ । ଏହା ବ୍ୟତୀତ ଅନ୍ୟ ଉପାୟ ବି ନ ଥିଲା । ଏହାର ପ୍ରଧାନ କାରଣ ହେଲା ସଂସ୍କୃତ ସାହିତ୍ୟର ବ୍ୟାପ୍ତି ଓ ପ୍ରସିଦ୍ଧି ।

ସଂସ୍କୃତ ସାହିତ୍ୟର ବ୍ୟାପକତା ଦୁଇଟି ଦିଗରୁ ଜାଣିହୁଏ । ଖ୍ରୀଷ୍ଟ ଜନ୍ମର ପ୍ରାୟ ଦେଢ଼ ହଜାର ବର୍ଷ ପୂର୍ବରୁ ଯେତେବେଳେ ଏ ଦେଶରେ ବେଦ ରଚିତ ହୋଇ ପ୍ରଚାରିତ ହେଲା, ସେହିଦିନ ଠାରୁ ଭାରତର ସଂସ୍କୃତ ପଣ୍ଡିତମାନେ କେବଳ ଯେ ଅଜସ୍ର ଗ୍ରନ୍ଥ ରଚନା କଲେ ତାହା ନୁହେଁ,ମାନବ ଜାତିର ଆବଶ୍ୟକତା ଅନୁଯାୟୀ ବିଭିନ୍ନ ଜ୍ଞାନର ଆବିଷ୍କାର କରି ସେଥିରେ ପାରଦର୍ଶିତା ଲାଭ କଲେ । ହିସାବ କରି ଦେଖାଯାଇଛି, ଜ୍ଞାନ-ବିଜ୍ଞାନର ବିଭିନ୍ନ ଦିଗରେ ପ୍ରାୟ ପଚାଶ ହଜାରରୁ ଅଧିକ ଗ୍ରନ୍ଥ ଏ ଦେଶରେ ରଚିତ ହୋଇଥିଲା । ସେହି ସବୁ ଗ୍ରନ୍ଥକୁ ବିଦ୍ୱାନମାନେ ନିମ୍ନଲିଖିତ ବିଭାଗରେ ବିଭକ୍ତ କରିଥାନ୍ତି ।

(୧) ବୈଦିକ ସାହିତ୍ୟ

(୨) ବେଦାଙ୍ଗ ସାହିତ୍ୟ (ଶିକ୍ଷା, କଳ୍ପ, ନିରୁକ୍ତ, ବ୍ୟାକରଣ, ଛନ୍ଦଶାସ୍ତ୍ର ଓ ଜ୍ୟୋତିଷ)

(୩) ପୁରାଣ ଓ ଇତିହାସ

(୪) ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର ଓ କାମଶାସ୍ତ୍ର

(୫) ଦର୍ଶନ

(୬) ସଂସ୍କୃତରେ ରଚିତ ବୌଦ୍ଧ ଓ ଜୈନ ସାହିତ୍ୟ

(୭) ଆୟୁର୍ବେଦ ଓ ଅନ୍ୟ ଉପବେଦ

(୮)　କାବ୍ୟ, ଗଦ୍ୟ, ନାଟକ, ଚମ୍ପୁ ଓ କାହାଣୀ

(୯)　ନାଟକ ଓ କାବ୍ୟର ଆଲୋଚନାତ୍ମକ ଗ୍ରନ୍ଥ

(୧୦)　ସଂକୀର୍ଣ୍ଣ କାବ୍ୟ, ଧର୍ମ ଓ ଦର୍ଶନ ଗ୍ରନ୍ଥର ଟୀକା ବା ଭାଷ୍ୟ ।

(୧୧)　ନିବନ୍ଧ

(୧୨)　ଯନ୍ତ୍ରମନ୍ତ୍ର ଓ ଭକ୍ତି ସାହିତ୍ୟ

(୧୩)　ପ୍ରସ୍ତର ଓ ତାମ୍ରପତ୍ର ଉପରେ ଲିଖିତ ଅନୁଶାସନ

ଦେଶର ବିଭିନ୍ନ ପ୍ରାନ୍ତର ପଣ୍ଡିତ ମାନଙ୍କ ଅନବରତ ସାଧନା ବଳରେ ଏ ଭାଷାରେ କେବଳ ଯେ ଅଗଣିତ ଗ୍ରନ୍ଥ ରଚିତ ହୋଇଥିଲା, ତାହା ନୁହେଁ, ଏହି ଭାଷାର ବହୁ କବି ଓ ଦାର୍ଶନିକ ସମସ୍ତ ବିଶ୍ୱରେ ଖ୍ୟାତି ଅର୍ଜନ କଲେ । ଏହି ଭାଷାରେ ସୃଷ୍ଟ ସାହିତ୍ୟ ବିଶ୍ୱ-ବିଶ୍ରୁତ ହେବା ସଙ୍ଗେ ସଙ୍ଗେ ଏପରି ଏକ ପୃଷ୍ଠଭୂମି ପ୍ରସ୍ତୁତ କଲା, ଯାହାକୁ ଅତିକ୍ରମ କରିବା କାହାରି ପକ୍ଷେ ସମ୍ଭବ ହେଲା ନାହିଁ । ଏପରିକି ଯେତେବେଳେ ଏ ଦେଶକୁ ମୁସଲମାନମାନେ ଆସିଲେ, ଯେତେବେଳେ ଇଂରେଜୀ ଶାସକମାନେ ଏ ଦେଶକୁ ଶାସନ କଲେ, ପୁଣି ଯେତେବେଳେ ଦେଶର ବିଭିନ୍ନ ପ୍ରାନ୍ତରେ ପ୍ରାନ୍ତୀୟ ଭାଷାରେ ସାହିତ୍ୟ ସୃଷ୍ଟି ହେଲା, ସେତେବେଳେ ମଧ୍ୟ ସଂସ୍କୃତ ସାହିତ୍ୟର ଆଲୋଚନା ଓ ବିବେଚନାରୁ ଲୋକେ ନିବୃତ୍ତ ହେଲେ ନାହିଁ । ଏହିପରି ଭାବେ ସଂସ୍କୃତ ସାହିତ୍ୟ ହେଲା ଏ ଦେଶର ଓ ଏ ଜାତିର ଏକ ଅବିଚ୍ଛେଦ୍ୟ ଅଙ୍ଗ । ପ୍ରାନ୍ତୀୟ ଭାଷା ଯେତେ ବିକଶିତ ହେଲେବି ସଂସ୍କୃତ ସାହିତ୍ୟର ସବୁ ବିଭାଗକୁ ଗ୍ରହଣ କରିବା ଏହା ପକ୍ଷରେ ସମ୍ଭବ ନ ଥିଲା । ସଂସ୍କୃତ ସାହିତ୍ୟର ବିଶାଳ ସୌଧ ହିଁ ଥିଲା ସେମାନଙ୍କର ଆଦର୍ଶ ।

ସଂସ୍କୃତ ସାହିତ୍ୟର ବିକାଶ ପଥରେ ଓଡ଼ିଶାର ଅବଦାନ କୌଣସି ଗୁଣରେ କମ୍ ନ ଥିଲା । ଉତ୍କଳୀୟ ପଣ୍ଡିତମାନେ ଯେ କେବଳ ସଂସ୍କୃତ ସାହିତ୍ୟର ସବୁ ବିଭାଗରେ ପାରଦର୍ଶିତା ଲାଭ କରିଥିଲେ, ତାହା ନୁହେଁ, ଏ ଦେଶରେ ଏପରି କେତେକ ଗ୍ରନ୍ଥ ରଚିତ ହୋଇଥିଲା, ଯାହାକି ସମଗ୍ର ବିଶ୍ୱରେ ଆଦୃତ ଓ ପ୍ରଶଂସିତ ହୋଇ ପାରିଥିଲା । ଏହିପରି ଦୁଇଟି ଗ୍ରନ୍ଥ ହେଉଛି, ବିଷ୍ଣୁଶର୍ମାଙ୍କ ରଚିତ **ପଞ୍ଚତନ୍ତ୍ର** ଓ ଜୟଦେବଙ୍କ ପ୍ରଣୀତ **ଗୀତଗୋବିନ୍ଦ** ।

## ବିଷ୍ଣୁ ଶର୍ମା ଓ ପଞ୍ଚତନ୍ତ୍ର

ଐତିହାସିକମାନେ **ପଞ୍ଚତନ୍ତ୍ର**ର ପ୍ରସିଦ୍ଧ ଲେଖକ ବିଷ୍ଣୁଶର୍ମାଙ୍କୁ କଳିଙ୍ଗର ଅଧିବାସୀରୂପେ ପ୍ରମାଣ କରିଛନ୍ତି । ସେମାନଙ୍କ ମତରେ **ପଞ୍ଚତନ୍ତ୍ର** ରେ ଉଲ୍ଲିଖିତ ଥିବା 'କଳିଙ୍ଗ ଦେଶ' ସମୁଦ୍ରର ତଟ ଦେଶରେ ଅବସ୍ଥିତ ଥିଲା ଓ ଏହି ଦେଶ ବିଶାଳକାୟ ହସ୍ତୀମାନଙ୍କ ପାଇଁ ପ୍ରସିଦ୍ଧ ଥିଲା । ଏହି ଗ୍ରନ୍ଥର କଥାମୁଖରେ ଥିବା ଅମରଶକ୍ତିଙ୍କ ପୁତ୍ର ଅନନ୍ତଶକ୍ତି ହେଉଛନ୍ତି ମାଠର ବଂଶର

ରାଜା ଅନନ୍ତଶକ୍ତି ବର୍ମା । ପୁଣି ପ୍ରାଚୀନ କଳିଙ୍ଗର ପିଷ୍ଟପୁରରୁ ପ୍ରଦତ୍ତ ହୋଇଥିବା ତଣ୍ଡିବାଦ ଅନୁଶାସନରେ ଉଲ୍ଲିଖିତ ଥିବା ବିଷ୍ଣୁ ଶର୍ମା **ପଞ୍ଚତନ୍ତ୍ର**ର ଲେଖକ ବ୍ୟତୀତ ଆଉ କେହି ନୁହନ୍ତି । ଏହିସବୁ ପ୍ରମାଣ ବଳରେ ବିଷ୍ଣୁ ଶର୍ମାଙ୍କୁ କଳିଙ୍ଗର ଅଧିବାସୀ ରୂପେ ଗ୍ରହଣ କଲେ ତାଙ୍କ ସମୟକୁ ଅର୍ଥାତ ପଞ୍ଚମ ଓ ଷଷ୍ଠ ଶତାବ୍ଦୀ ବେଳକୁ ଓଡ଼ିଶା ବା କଳିଙ୍ଗ ସଂସ୍କୃତ ଭାଷାର ଅଧ୍ୟୟନ ପାଇଁ ପ୍ରସିଦ୍ଧି ଲାଭ କରିଥିବା ଜଣାଯାଏ । ଏହି ସମୟରେ ଏ ଦେଶରେ ରାଜୁତି କରୁଥିବା ଗୁପ୍ତବଂଶୀୟ ରାଜାମାନେ ମଧ୍ୟ ସେମାନଙ୍କ ଅନୁଶାସନ ସବୁକୁ ନିର୍ଦ୍ଦୋଷ ସଂସ୍କୃତରେ ଖୋଦିତ କରିଥିଲେ ।

ବିଷ୍ଣୁ ଶର୍ମାଙ୍କ ପ୍ରଣୀତ **ପଞ୍ଚତନ୍ତ୍ର**ର ପ୍ରସିଦ୍ଧି ସମସ୍ତ ବିଶ୍ୱରେ ପ୍ରସାରିତ ହୋଇଥିଲା । ବେନିଫି ପଞ୍ଚତନ୍ତ୍ର ର ଅନୁବାଦ କରି ଇଉରୋପୀୟ ଭାଷା ସବୁରେ ପ୍ରଚଳିତ କାହାଣୀ ସହ ତୁଳନା କଲେ । ଏହି ତୁଳନାତ୍ମକ ଅଧ୍ୟୟନରୁ ଜଣାଗଲା, ବିଶ୍ୱରେ ପ୍ରଚଳିତ କାହାଣୀ ସବୁର ମୂଳ ଦେଶ ହେଉଛି ଭାରତବର୍ଷ । **ପଞ୍ଚତନ୍ତ୍ର**ର କାହାଣୀସବୁ ପୃଥିବୀର ସମସ୍ତ କାହାଣୀ ସାହିତ୍ୟକୁ ଅତି ଆଶ୍ଚର୍ଯ୍ୟଜନକଭାବେ ପ୍ରଭାବିତ କରିଥିଲା । ଜେ. ହରଟେଲ ଏହି ଗ୍ରନ୍ଥର ପ୍ରାୟ ଦୁଇଶହ ଅନୁବାଦ ହୋଇଥିବା ଓ ଜାଭାଦେଶଠାରୁ ଆରମ୍ଭକରି ତୁଷାରାଚ୍ଛନ୍ନ ଦେଶ ପର୍ଯ୍ୟନ୍ତ ଏହା ପ୍ରସାରିତ ହୋଇଥିବା ତାଙ୍କ (Das Panchatantra ) ଗ୍ରନ୍ଥରେ ଦର୍ଶାଇଛନ୍ତି । **ପଞ୍ଚତନ୍ତ୍ର** ର ଗୌରବ କେବଳ କଳିଙ୍ଗର ନୁହେଁ, ଭାରତର ନୁହେଁ, ସମସ୍ତ ବିଶ୍ୱର । ବିଷ୍ଣୁ ଶର୍ମାଙ୍କ ଅମର କାହାଣୀସବୁ ଯୋଗୁଁ, କଳିଙ୍ଗ କେବଳ ଭାରତ ନୁହେଁ, ସମସ୍ତ ବିଶ୍ୱରେ ସୁବିଦିତ ହୋଇ ପାରିଥିଲା । କୋଣାର୍କ ପରି ପୁରୀର ଜଗନ୍ନାଥ ମନ୍ଦିର ଓ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ହୁଏତ ଦିନେ ଭାଙ୍ଗିଯିବ, କିନ୍ତୁ **ପଞ୍ଚତନ୍ତ୍ର** ଚିରଦିନ ଅମର ।

## ଜୟଦେବ ଓ ଗୀତଗୋବିନ୍ଦ

ଏହିପରି ଏକ ଅମର ରଚନା ହେଉଛି, ଜୟଦେବକୃତ **ଗୀତଗୋବିନ୍ଦ । ପଞ୍ଚତନ୍ତ୍ର** ପରି ସମସ୍ତ ବିଶ୍ୱରେ ଏହା ପ୍ରସିଦ୍ଧି ଲାଭ କରି ନ ଥିଲେ ହେଁ, ଏହାର 'କାନ୍ତକୋମଳ ପଦାବଳୀ', ସରସ ସୁନ୍ଦର ଭାଷା, ସୁଲଳିତ ମଧୁର ଛନ୍ଦ ଓ ରାଧା କୃଷ୍ଣଙ୍କର ଅପୂର୍ବ ଭାବପୂର୍ଣ୍ଣ ଲୀଳା, ସଂସ୍କୃତ ସାହିତ୍ୟ ରାଜ୍ୟରେ ଯୁଗାନ୍ତର ସୃଷ୍ଟି କରିଥିଲା । ଷୋଡ଼ଶ ଶତାବ୍ଦୀରେ ବୈଷ୍ଣବ ଧର୍ମର ପ୍ରଚାର ଓ ଶ୍ରୀଚୈତନ୍ୟଙ୍କ ଆଦର ଯୋଗୁଁ, ଏହା ସମସ୍ତ ଭାରତବର୍ଷରେ ଭକ୍ତମାନଙ୍କର କଣ୍ଠହାର ରୂପେ ଶୋଭା ପାଇଲା । ସଙ୍ଗୀତଜ୍ଞମାନେ ଏହାର ଛନ୍ଦର ମାଦକତାରେ ମୁଗ୍ଧ ହେଲେ । ଗଜପତି ପ୍ରତାପରୁଦ୍ରଙ୍କ ଆଦେଶ କ୍ରମେ ଏହା ଜଗନ୍ନାଥ ମନ୍ଦିରରେ ପ୍ରତିଦିନ ପଠିତ ହେବା ଫଳରେ ଏହାର ପାର୍ଥିବତା ଲୋପ ପାଇଗଲା । ରସିକମାନେ ଏହାର ଶୃଙ୍ଗାରିକତାରେ ପାଇଲେ ଭଗବାନଙ୍କ ପ୍ରେମ-ଲୀଳାର ଅପୂର୍ବ ସ୍ୱାଦ । କେବଳ ସଂକୀର୍ଣ୍ଣ ପ୍ରାନ୍ତୀୟତା ଦୃଷ୍ଟିରୁ ନୁହେଁ, ଷୋଡ଼ଶ ଶତାବ୍ଦୀର ନାଭାଦାସ ତାଙ୍କ **ଭକ୍ତମାଳ** ଗ୍ରନ୍ଥରେ ଓ ଗଦା ଦ୍ୱିବେଦୀ ତାଙ୍କର

**ସଂପ୍ରଦାୟ ପ୍ରଦୀପ**ରେ ଜୟଦେବଙ୍କୁ ଓଡ଼ିଶାର ବୋଲି କହିଛନ୍ତି । ଏହାବ୍ୟତୀତ ମହାରାଷ୍ଟ୍ରର ମହୀପତି **ଭକ୍ତବିଜୟ**ରେ, କୃଷ୍ଣଦାସ ବାବାଜୀଙ୍କ **ଭକ୍ତମାଳ**ରେ ,ମିଥିଳାର ଚନ୍ଦ୍ର ଦତ୍ତଙ୍କ **ଭକ୍ତମାଳ**ରେ, ଜୟଦେବ ପୁରୁଷୋତ୍ତମ କ୍ଷେତ୍ର ନିକଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମଗ୍ରହଣ କରିଥିବା ବର୍ଣ୍ଣିତ । ଜୟଦେବ ମଧ ନିଜକୁ ସାଗର ତଟସ୍ଥିତ କେନ୍ଦୁବିଲ୍ୱ ଗ୍ରାମରେ ଚନ୍ଦ୍ର ସଦୃଶ ଜନ୍ମଲାଭ କରିଥିବା ଉଲ୍ଲେଖ କରିଛନ୍ତି । ଭାରତର ବିଭିନ୍ନ ଅଞ୍ଚଳରେ ଜୟଦେବ ଓଡ଼ିଶାର ବୋଲି ପ୍ରମାଣିତ ହୋଇଥିବାବେଳେ ବଙ୍ଗ ଭାଷାରେ ରଚିତ ୧୮୦୩ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ଗ୍ରନ୍ଥରେ ସେ ହେଲେ ବଙ୍ଗଳାର । ଏହି ଗ୍ରନ୍ଥ ବଙ୍ଗୀୟ ସାହିତ୍ୟ ପରିଷଦ ଦ୍ୱାରା ପ୍ରକାଶିତ ହୋଇଥିଲେ ହେଁ, ଏହାର ପ୍ରାମାଣିକତା ସମ୍ବନ୍ଧରେ ଆଲୋଚକମାନେ ଅତ୍ୟନ୍ତ ସନ୍ଦିହାନ ।

ଷୋଡ଼ଶ ଶତାବ୍ଦୀରେ ଶ୍ରୀଚୈତନ୍ୟଙ୍କ ଆଗମନ ପୂର୍ବରୁ ଜଗନ୍ନାଥ ମନ୍ଦିରରେ ଏହାକୁ ପ୍ରତିଦିନ ପାଠ କରିବାର ପରଂପରା, ପୁଣି ଓଡ଼ିଶାରେ ମିଳୁଥିବା ଏହାର ବହୁ ଗଦ୍ୟ ଓ ପଦ୍ୟାନୁବାଦ ଓଡ଼ିଶାରେ ଏହାର ଲୋକପ୍ରିୟତା ସମ୍ବନ୍ଧରେ ସୂଚନା ଦିଏ । ଜୟଦେବଙ୍କ ଖ୍ୟାତି ମଧ ଓଡ଼ିଶାର ଲୋକମନରୁ ଏକାବେଳେକେ ବିସ୍ମୃତ ନୁହେଁ । କେନ୍ଦୁବିଲ୍ୱ ନିକଟବର୍ତ୍ତୀ ଏକ ବିଶାଳ ବଟବୃକ୍ଷକୁ ଏବେ ବି ଲୋକେ 'ଜୟଦେବ ବଟ' ରୂପେ ଚିହ୍ନିତ କରିଥାନ୍ତି । ଏହି ବଟବୃକ୍ଷ ମୂଳେ ଜୟଦେବ ଧାନ କରୁଥିବା ଓ ଏହିଠାରେ ଭଗବାନଙ୍କ ଦର୍ଶନ ପାଇଥିବା ଲୋକମାନଙ୍କର ବିଶ୍ୱାସ । କେନ୍ଦୁବିଲ୍ୱ ଓ ଏହାର ନିକଟବର୍ତ୍ତୀ ଅଞ୍ଚଳରେ ତାଙ୍କ ଆରାଧ ମାଧବଙ୍କ ପାଇଁ ନିର୍ମିତ ହୋଇଥିବା ବହୁ ମନ୍ଦିରର ସୂଚନା ମିଳିଥାଏ । ଓଡ଼ିଶାର ଆଦିକବି ସାରଳା ଦାସ ତାଙ୍କ ମହାଭାରତରେ ପ୍ରଚୀ ନଦୀ କୂଳରେ ଧର୍ମରାଜ ଯୁଧିଷ୍ଠିର ମାଧବ ପ୍ରତିମା ପୂଜା କରିଥିବା ଉଲ୍ଲେଖ କରିଛନ୍ତି । **ଗୀତଗୋବିନ୍ଦ**ର 'ହରି ସ୍ମରଣ' ଓ 'ଶୃଙ୍ଗାରିକତା'ର ପରଂପରା କେବଳ ଜୟଦେବଙ୍କ ଦ୍ୱାରା ସୃଷ୍ଟି ହୋଇ ନ ଥିଲା । ସେହି ସମୟରେ ନିର୍ମିତ କୋଣାର୍କ ମନ୍ଦିର ଏହାର ଅନ୍ୟ ଏକ ପ୍ରମାଣ । କୋଣାର୍କ ମନ୍ଦିର ଗାତ୍ରରେ ସ୍ଥାନ ପାଇଥିବା ଶୃଙ୍ଗାରିକ ଲୀଳା **ଗୀତଗୋବିନ୍ଦ**ର ବର୍ଣ୍ଣନା ସହ ସାଦୃଶ୍ୟ ରକ୍ଷା କରିଥାଏ । ପୁଣି ଜୟଦେବଙ୍କ ଆଚରିତ ସହଜିଆ ମାର୍ଗର ପ୍ରବର୍ତ୍ତକ ହେଉଛନ୍ତି, ଓଡ଼ିଶାର ସାଧକମାନେ । ଜୟଦେବଙ୍କ ଦଶାବତାର ବନ୍ଦନାର ପରଂପରା କେବଳ ଯେ ସାରଳା ମହାଭାରତରେ ଦେଖିବାକୁ ମିଳେ, ତାହା ନୁହେଁ, ସାରଳା ଦାସ 'ପ୍ରଳୟ ପୟୋଧି' ଶବ୍ଦକୁ ମଧ ଏହି ବର୍ଣ୍ଣନାରେ ସ୍ଥାନ ଦେଇଛନ୍ତି । ଏତେ ପ୍ରମାଣ ଥିବା ସତ୍ତ୍ୱେ, ଜୟଦେବଙ୍କୁ ବଙ୍ଗଳାର କହିବା, କୋଣାର୍କ ଭୁବନେଶ୍ୱର ମନ୍ଦିରକୁ ବଙ୍ଗୀୟ କାରିଗରଙ୍କ କୀର୍ତ୍ତି ରୂପେ ଗ୍ରହଣ କରିବା ପରି, ଓ ଓଡ଼ିଆ ଭାଷାକୁ ବଙ୍ଗଳାର ଉପଭାଷା ରୂପେ ବର୍ଣ୍ଣନା କଲା ପରି, ଏ ଯୁଗର ବଙ୍ଗୀୟ ଆଲୋଚକଙ୍କର ଏକ ହାସ୍ୟାସ୍ପଦ ପ୍ରୟାସ ।

ଜୟଦେବଙ୍କ **ଗୀତଗୋବିନ୍ଦ** ଓଡ଼ିଶୀ ସଙ୍ଗୀତ, ନୃତ୍ୟ ଓ ଓଡ଼ିଆ ସାହିତ୍ୟର ଏକ ବିଶିଷ୍ଟ ଅଙ୍ଗ । ସାରଳା ଦାସଙ୍କଠାରୁ ଆରମ୍ଭକରି ଗୋପାଳକୃଷ୍ଣଙ୍କ ପର୍ଯ୍ୟନ୍ତ ପ୍ରାୟ ସବୁ କବି ଓ ସଙ୍ଗୀତକାରଙ୍କ ରଚନାରେ ଏହାର ପ୍ରଭାବ ପରିଦୃଷ୍ଟ ହୁଏ । ଭାଗବତର ଶରତ-କାଳୀନ

ରାସ ପରି, ଜୟଦେବଙ୍କ ପ୍ରଚାରିତ ବସନ୍ତରାସ, ନରସିଂହ ସେଣଙ୍କ (ଷୋଡ଼ଶ ଶତାବ୍ଦୀ) **ଗୋପ** କାବ୍ୟରୁ ପିଣ୍ଡିକ ଶ୍ରୀଚନ୍ଦନଙ୍କ **ବସନ୍ତ-ରାସ** (ଊନବିଂଶ ଶତାବ୍ଦୀ) ପର୍ଯ୍ୟନ୍ତ ବହୁଗ୍ରନ୍ଥର ଥିଲା ବିଷୟ-ବସ୍ତୁ। ନାରୀ ରୂପ କେଳି ବର୍ଣ୍ଣନାରେ ପ୍ରଯୁକ୍ତ ଉପମାବଳୀ ଖାଲି ଓଡ଼ିଆ ଭାଷାରେ ସଜେଇ ଦେଇ ଓଡ଼ିଶାର ବହୁ କବି, କବି-ଯଶ ପ୍ରାପ୍ତିର ଆଶା କରିଥିଲେ । ବାସ୍ତବରେ ଜୟଦେବ ହିଁ ଥିଲେ ଓଡ଼ିଆ ସାହିତ୍ୟର ଜନକ ।

## ବିଶ୍ୱନାଥଙ୍କ ସାହିତ୍ୟ ଦର୍ପଣ

କାବ୍ୟ ଓ ନାଟକର ଆଲୋଚନା ଭାରତବର୍ଷର ଏକ ପ୍ରାଚୀନ ପରଂପରା। କାହାରି କାହାରି ମତରେ ଏହା ବେଦଠାରୁ ମଧ୍ୟ ପ୍ରାଚୀନ । ଭରତଙ୍କ ନାଟ୍ୟ-ଶାସ୍ତ୍ରରେ ଏହିସବୁ ପ୍ରାଚୀନ ଗ୍ରନ୍ଥକାରଙ୍କ ଉଲ୍ଲେଖ ମିଳୁଥିଲେ ହେଁ ପ୍ରଥମ ଶତାବ୍ଦୀରେ 'ଭରତ ମୂନୀ' ଏହି ସବୁ ଗ୍ରନ୍ଥରୁ ସାର ସଂଗ୍ରହକରି **ନାଟ୍ୟ-ଶାସ୍ତ୍ର** ରଚନା କଲେ । ଏଥିରେ ନାଟକତତ୍ତ୍ୱ ବ୍ୟତୀତ ରସ, ଅଳଙ୍କାର, ସଙ୍ଗୀତ, ଅଭିନୟ ପ୍ରଭୃତି ବିଷୟରେ ମଧ୍ୟ ଆଲୋଚନା ହେଲା । ଭରତଙ୍କ ପରେ ଧ୍ୱନି, ବକ୍ରୋକ୍ତି, ରସ, ରୀତି, ଅଳଙ୍କାରକୁ କାବ୍ୟର ଆତ୍ମାରୂପେ ଗ୍ରହଣ କରି ବହୁ କାବ୍ୟ-ଶାସ୍ତ୍ର ରଚିତ ହେଲା । ଏହିସବୁ କାବ୍ୟ-ଶାସ୍ତ୍ରଜ୍ଞଙ୍କ ମଧ୍ୟରୁ ଭାମହ, ଦଣ୍ଡୀ, ବାମନ, ରୁଯ୍ୟକ, ରାଜଶେଖର, ଆନନ୍ଦ ବର୍ଦ୍ଧନ, ମମ୍ମଟ, ଅପପୟ ଦୀକ୍ଷିତ, ବିଶ୍ୱନାଥ, ଗଙ୍ଗାଧର ଓ ଭାନୁ ଦତ୍ତ ପ୍ରଭୃତି ଭାରତର ପ୍ରତ୍ୟେକ ଅଞ୍ଚଳରେ ପ୍ରସିଦ୍ଧି ଲାଭ କରିଥିଲେ । ଏମାନଙ୍କ ମଧ୍ୟରୁ **ସାହିତ୍ୟ ଦର୍ପଣ**କାର ବିଶ୍ୱନାଥ ଓଡ଼ିଶାର ଲୋକ । ସେ ଭାନୁଦେବ ଚତୁର୍ଥଙ୍କ ସମୟରେ ଜୀବିତ ଥିଲେ । ସେ 'ରସବାଦ'ର ସମର୍ଥକ । ତାଙ୍କ ପୂର୍ବରୁ ଏ ଦେଶରେ ଅଳଙ୍କାର ଶାସ୍ତ୍ରର ପ୍ରଣେତାଭାବେ **ଏକାବଳୀ**ର ଲେଖକ ବିଦ୍ୟାଧର ପ୍ରସିଦ୍ଧି ଲାଭ କରିଥିଲେ । ସେ ନରସିଂହଦେବ ପ୍ରଥମଙ୍କ ସମକାଳୀନ ଥିଲେ । ଏହି ଦୁଇଟି ଗ୍ରନ୍ଥ ବ୍ୟତୀତ ଭାରତରେ ପ୍ରସିଦ୍ଧି ଲାଭ କରିଥିବା ବହୁ ଅଳଙ୍କାର ଶାସ୍ତ୍ରର ଟୀକାଗ୍ରନ୍ଥ ସବୁ ଓଡ଼ିଶାର ରଚିତ ହୋଇଥିଲା । ଏହିସବୁ ଗ୍ରନ୍ଥରୁ ଜଣାଯାଏ ଯେ ଓଡ଼ିଶା ଏକଦା ଅଳଙ୍କାର-ଶାସ୍ତ୍ରର ଆଲୋଚନା ପାଇଁ ପ୍ରସିଦ୍ଧ ଥିଲା ।

ବିଶ୍ୱନାଥ କବିରାଜ କେବଳ **ସାହିତ୍ୟ-ଦର୍ପଣ** ରଚନା କରି ପ୍ରସିଦ୍ଧି ଲାଭ କରି ନ ଥିଲେ । ସେ ଓଡ଼ିଶାରେ **କୁବଳୟା ଚରିତ କାବ୍ୟ**କୁ ପ୍ରାକୃତ ଭାଷାରେ ରଚନା କରିଥିଲେ । ଏହା ବ୍ୟତୀତ ତାଙ୍କର ଅନ୍ୟାନ୍ୟ ଗ୍ରନ୍ଥ ହେଲା,

(୧) **ପ୍ରଭାବତୀ ପରିଣୟ ନାଟିକା ।**

(୨) **ଚନ୍ଦ୍ରକଳା ନାଟିକା ।**

(୩) **ପ୍ରଶସ୍ତି ରତ୍ନାବଳୀ ।**

(୪) **କାବ୍ୟ-ପ୍ରକାଶ ଦର୍ପଣ ।**

(୫) **ନରସିଂହ ବିଜୟ ।**

ଅଳଙ୍କାର ଶାସ୍ତ୍ରର ଆଲୋଚନାରେ ଓଡ଼ିଶାର ପଣ୍ଡିତମାନେ ବିଶେଷ ଆଗ୍ରହ ପ୍ରକାଶ କଲାପରି ସ୍ମୃତି-ଶାସ୍ତ୍ର ରଚନାକରି ଚିଦାନନ୍ଦ, ଶ୍ରୀଧର ଆଚାର୍ଯ୍ୟ, ନୀଳାମ୍ବର ଆଚାର୍ଯ୍ୟ, ଶଙ୍ଖଧର ଓ ଶମ୍ଭୁକର ବାଜପେୟୀ ପ୍ରଭୃତି ପ୍ରସିଦ୍ଧି ଲାଭ କରିଥିଲେ ।

ଓଡ଼ିଶାରେ ବହୁ ସଂସ୍କୃତ ପଣ୍ଡିତ ଜନ୍ମଲାଭ କରି ସଂସ୍କୃତ ସାହିତ୍ୟକୁ ସମୃଦ୍ଧ କରିଥିଲେ ହେଁ, ଏମାନେ ସମସ୍ତେ ଭାରତୀୟ କବି ବା ଆଳଙ୍କାରିକ ଭାବେ ପ୍ରସିଦ୍ଧି ଲାଭ କରିଥିଲେ । ଭାରତର ଅନ୍ୟ ପ୍ରାନ୍ତରେ ଏହିସବୁ ଗ୍ରନ୍ଥ ପଠିତ ଆଲୋଚିତ ହେବାପରି, ଭାରତର ଅନ୍ୟାନ୍ୟ ଅଞ୍ଚଳରେ ରଚିତ, **ରଘୁବଂଶ, କୁମାରସମ୍ଭବ, ନୈଷଧ, ଉତ୍ତର ରାମଚରିତ, କାଦମ୍ବରୀ, ଅଭିଜ୍ଞାନ ଶକୁନ୍ତଳମ୍** ଓ ଅନ୍ୟାନ୍ୟ ବହୁ ଗ୍ରନ୍ଥ ଓଡ଼ିଶାରେ ମଧ୍ୟ ଆଲୋଚିତ ହେଉଥିଲା । ଓଡ଼ିଆ ଭାଷାର ଉଦ୍ଭବ ଓ ବିକାଶ ହେବା ପରେ ମଧ୍ୟ ସଂସ୍କୃତରେ କାବ୍ୟ, ନାଟକ, ଅଳଙ୍କାର ଓ ସ୍ମୃତି ଗ୍ରନ୍ଥ ରଚନା କରିବାରୁ ଓଡ଼ିଆ ପଣ୍ଡିତ ମାନେ ନିବୃତ୍ତ ହୋଇ ନ ଥିଲେ । ଏପରିକି ଓଡ଼ିଆ ସାହିତ୍ୟର ବହୁ କବି ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଏହିପରି ଭାବେ ଦେଖିଲେ ସଂସ୍କୃତ କେବଳ ଓଡ଼ିଆ ଭାଷାର ଜନନୀ ନୁହେଁ, ଏହା ଓଡ଼ିଆ ଭାଷାର ପାଳୟତ୍ରୀ ମଧ୍ୟ । ସେଥିପାଇଁ ଓଡ଼ିଆ ସାହିତ୍ୟର ବିକାଶରେ ସଂସ୍କୃତ ଭାଷାର କାବ୍ୟ, ପୁରାଣ, ନାଟକ, ଅଳଙ୍କାର ଗ୍ରନ୍ଥ, କାମଶାସ୍ତ୍ର, ଅର୍ଥଶାସ୍ତ୍ର ଓ ନୀତିଶାସ୍ତ୍ରର ଅବଦାନ ସର୍ବାଧିକ ।

(୨)

## ପାଲି, ପ୍ରାକୃତ ଓ ଅପଭ୍ରଂଶ ସାହିତ୍ୟ

ସଂସ୍କୃତ ଭାଷା ଓ ସାହିତ୍ୟ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କଲା ପରି ପାଲି, ପ୍ରାକୃତ ଓ ଅପଭ୍ରଂଶ ଭାଷାର ଅବଦାନ ଏ ଦେଶର ଭାଷା ଓ ସାହିତ୍ୟର ଅଭିବୃଦ୍ଧିରେ ବହୁ ସାହାଯ୍ୟ କରିଥିଲା ।

ଅଶୋକଙ୍କ ଧଉଳିଗିରି ଓ ଜଉଗଡ଼ ବା ସମାପା ଅନୁଶାସନ ଏ ଦେଶରେ ଲିପି ଓ ଭାଷାର ପ୍ରଥମ ଉଦାହରଣ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଏହା ଖୋଦିତ ହୋଇଥିଲା । ଏଥିରେ ବ୍ୟବହୃତ ଭାଷାକୁ ସାଧାରଣତଃ ପାଲି କୁହାଯାଉଥିଲେ ହେଁ, ଏଥିରେ ବ୍ୟବହୃତ ବାକ୍ୟରୀତି, ଶବ୍ଦମାଳା ଓ ଭାଷାରେ ଓଡ଼ିଆ ଭାଷାର ଆଦି ପ୍ରବୃତ୍ତି ବିଦ୍ୟମାନ ଥିବା ବିଦ୍ୱାନମାନଙ୍କର ମତ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଉତ୍କୀର୍ଣ୍ଣ ଖାରବେଳ ଶିଳାଲେଖ ସମ୍ବନ୍ଧରେ ମତଦେଇ ଭାଷାତତ୍ତ୍ୱବିଦ୍ ଡଃ ଦୀନେଶ ଚନ୍ଦ୍ର ସରକାର ଏହାକୁ **"Prakrit resembling Pali"** ବୋଲି କହିଛନ୍ତି । ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କ ମତରେ, **"It (Hatigumpha Inscription) is also written in Brahmi script and in a lan-**

guage cognat to that of the aforesaid Ashokan Inscriptions, but very different in style. Its language, remarkable for brevity and elegance, is very closely akin to Pali ( 'The Evolution of Oriya Language Script' : Intro. pp -1) ଏହି ପ୍ରାକୃତର ଯେ କୌଣସି ସ୍ୱତନ୍ତ୍ର ନାମ ଦେଇ ନ ଥିବାବେଳେ ଡକ୍ଟର ବେଣୀମାଧବ ପାଢ଼ୀଙ୍କ ମତରେ ଏହା ହେଉଛି 'ଉଡ୍ରଜା ପ୍ରାକୃତ ।'

ଭରତ ମୁନି ଯେଉଁ 'ଔଡ୍ରୀ' ବିଭାଷାର ନାମୋଲ୍ଲେଖ କରିଥିଲେ ତାହାର ସ୍ୱତନ୍ତ୍ର ପ୍ରବୃତ୍ତି ସମ୍ବନ୍ଧରେ କୌଣସି ପ୍ରାକୃତ-ବ୍ୟାକରଣକାର କିଛି ସୂଚନା ଦେଇ ନାହାନ୍ତି । କେବଳ ମାର୍କଣ୍ଡେୟ ତାଙ୍କ **ପ୍ରାକୃତ ସର୍ବସ୍ୱ** ଗ୍ରନ୍ଥରେ ଏହାର ଲକ୍ଷଣ ପ୍ରଦାନ କରି କହିଛନ୍ତି, ''ଶାବର୍ଯାମେ-ବୌଡ୍ରୀ ଯୋଗାତ୍ତଦେଶ୍ୟ ଶୌରସେନ୍ୟାଦେଃ'' । ଏଥିରେ କୁହାଯାଇଛି, ଔଡ୍ରୀ ବିଭାଷାର ସୃଷ୍ଟି ହୋଇଛି ତିନୋଟି ଭାଷାରୁ- ୧ - ଔଡ୍ରଦେଶ ପଦ, ୨ - ଶୌରସେନାଦି ପଦ, ୩ - ଶାବରୀ ପଦ ଏବଂ ଏ ତିନି ଭାଷାର ସମନ୍ୱୟରୁ । ଏଥିରେ ପ୍ରଯୁକ୍ତ 'ଶୌରସେନ୍ୟାଦି ପଦ'ର ବ୍ୟାଖ୍ୟା କରି ଡକ୍ଟର ପାଢ଼ୀ ନିମ୍ନ ବିଶ୍ଳେଷଣ ଦର୍ଶାଇଛନ୍ତି । ତାଙ୍କ ମତରେ-

୧। ପ୍ରାଚ୍ୟା ସିଦ୍ଧି ଶୌରସେନ୍ୟା । ('ପ୍ରାଚୀ' ଭାଷା ଶୌରସେନୀରୁ ସିଦ୍ଧି)

୨। 'ଆବନ୍ତୀ ସ୍ୟାନ୍ମହାରାଷ୍ଟ୍ରୀ ଶୌରସେନ୍ୟୋସ୍ତୁ ସଂକରାତ୍,' ଅର୍ଥାତ୍ ମହାରାଷ୍ଟ୍ରୀ ଓ ଶୌରସେନୀ ଦୁଇଟିର ସାଙ୍କର୍ଯ ମଧ୍ୟରୁ ଆବନ୍ତୀ ସିଦ୍ଧ ହୁଏ ।

୩। 'ମାଗଧୀ ଶୌରସେନୀତଃ'(ମାଗଧୀ' ଶୌରସେନୀରୁ ସିଦ୍ଧହୁଏ ।)

ଏପରି ଭାବେ ତିନୋଟି 'ଭାଷାର'ର ନିଷତ୍ତି କରାଯାଇ ତା'ପରେ 'ବିଭାଷା'ମାନଙ୍କର ଉତ୍ପତ୍ତି ସମ୍ବନ୍ଧରେ ଯେଉଁ ସୂଚନା ଦିଆଯାଇଛି, ତାହା ହେଲା-

(କ) 'ମାଗାଧ୍ୟାଃ' ଶାକାରୀ (ମାଗଧୀରୁ 'ଶାକାରୀ' ସିଦ୍ଧ ହୁଏ) ।

(ଖ) 'ଚାଣ୍ଡାଳୀ' ମାଗଧୀ ଶୌରସେନୀଭ୍ୟାଂ ପ୍ରାୟଶୋ ଭବେତ୍' (ମାଗାଧୀ ଓ ଶୌରସେନୀ ଦୁଇଟିରୁ 'ଚାଣ୍ଡାଳୀ' ସିଦ୍ଧି ହୁଏ ।)

(ଗ) 'ଚାଣ୍ଡାଲ୍ୟା ଶାବରୀ ସିଦ୍ଧି ।' (ଚାଣ୍ଡାଳୀରୁ 'ଶବରୀ' ଉତ୍ପତ୍ତି ଲାଭ କରିଛି) । ଏହାପରେ କୁହାଗଲା 'ଶବର୍ଯା ମେବୌଡ୍ରୀ ଯୋଗାତ୍ତଦେଶ୍ୟ ଶୌରସେନ୍ୟାଦେଃ'' ଏହିପରି ଭାବେ ଦେଖିଲେ ଓଡ଼ିଆ ଭାଷାର ଉତ୍ପତ୍ତି କ୍ରମ ନିମ୍ନଭାବେ ଅବଧାରଣା କରାଯାଇପାରେ ।




'ଶୌର ସେନ୍ୟାଦି'ରେ ଏହିସବୁ ଭାଷା ଥିବା ନିର୍ଣ୍ଣୟ କରାଯାଇପାରେ । ତେଣୁ, ଶୌରସେନୀ, ମାଗଧୀ, ଶାକାରୀ, ଚାଣ୍ଡାଳୀ ଓ ଶାବରୀ ସହ ଓଡ଼ିଶାରେ ପ୍ରଚଳିତ ପଦ ମିଶି 'ଔଡ୍ରୀ' ବିଭାଷାର ସୃଷ୍ଟି ଏବଂ ସେଇଥିରୁ ଆଧୁନିକ ଓଡ଼ିଆ ଭାଷାର ଉତ୍ପତ୍ତି । ଏହି ଉଡ୍ରଜ୍ୟା-ପ୍ରାକୃତ ଅଶୋକ ଓ ଖାରବେଳଙ୍କ ସମୟରୁ ଏ ଦେଶରେ ପ୍ରଚଳିତ ଥିଲା । ସେଥିପାଇଁ ଅଶୋକ ଓ ଖାରବେଳଙ୍କ ଅନୁଶାସନ ଶୁଦ୍ଧ ପାଲି ବା ଶୁଦ୍ଧ ଅର୍ଦ୍ଧ-ମାଗଧୀରେ ରଚିତ ନ ହୋଇ ସେଥିରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହେଲା । ଏହି ପାର୍ଥକ୍ୟରୁ ଓଡ଼ିଆ ଭାଷାର ମୂଳରୂପର ସନ୍ଧାନ ମିଳିଥାଏ ।

ଅଶୋକ ବିଶେଷକରି ଖାରବେଳଙ୍କ ଅନୁଶାସନର ଭାଷାକୁ ଅନୁଶୀଳନ କରି ଲୋକେ ବିଭିନ୍ନ ପ୍ରକାର ମତ ଦେଇଛନ୍ତି । ସେଥିରୁ ଗୋଟିଏ ମତ ହେଲା, ଯେ ଏଥିରେ ବ୍ୟବହୃତ ପାଲି ଭାଷା ଉତ୍ତର ଭାରତର । ଏହାର ମୁଖ୍ୟ ପ୍ରବକ୍ତା ହେଉଛନ୍ତି ଡକ୍ଟରେ ସୁନୀତି କୁମାର ଚାଟର୍ଜୀ । ଅନ୍ୟ ମତ ହେଉଛି, ଯେ ଏହା କଳିଙ୍ଗର ଭାଷା । ଡକ୍ଟର ନବୀନ କୁମାର ସାହୁ ଏହି ମତର ସମର୍ଥକ । ତୃତୀୟ ମତ ହେଉଛି, ଯେ ଏହା ଔଡ୍ରୀ ମାଗଧୀ ପ୍ରାକୃତ । ଏହାକୁ ଡକ୍ଟରେ ବେଣୀମାଧବ ପାଢ଼ୀ 'ଓଡ୍ରଜ୍ୟା ପ୍ରାକୃତ୍ୟ' ମଧ କହିଛନ୍ତି । ସେ ଯାହାହେଉ, ଏଥିରେ ଗୋଟିଏ କଥା ନିରାଟ ସତ୍ୟ ଯେ ଅଶୋକ ବା ଖାରବେଳ ନିଜର କୀର୍ତ୍ତିରାଜିକୁ ଅମର କରିବା ପାଇଁ ଶିଳା ଉପରେ ଏହାକୁ ଲିପିବଦ୍ଧ କରିଥିଲେ । ଏହା ଥିଲା ମୁଖ୍ୟତଃ ରାଜାଙ୍କର ଘୋଷଣା ପତ୍ର । ଦେଶର ସାଧାରଣ ଅଧିବାସୀଙ୍କ ପାଇଁ ଏହା ଉଦ୍ଦିଷ୍ଟ ଥିଲେ ହେଁ ଏହାକୁ ଦେଶରେ ପ୍ରଚଳିତ ଭାଷା କହିବା ଠିକ୍ ନୁହେଁ । ପରବର୍ତ୍ତୀ ଯୁଗରେ ଅର୍ଥାତ ଭୌମ ଓ ସୋମ ବଂଶୀୟ ରାଜାମାନଙ୍କ ଅଭିଲେଖାରେ ଯେତେବେଳେ ଶୁଦ୍ଧ ସଂସ୍କୃତ ଭାଷା ବ୍ୟବହୃତ ହେଲା, ସେତେବେଳେ ଓଡ଼ିଶାର ଅଧିବାସୀମାନେ କ'ଣ ସମସ୍ତେ ସଂସ୍କୃତରେ ପଣ୍ଡିତ ଥିଲେ ? ପୁଣି ଯେତେବେଳେ ସଂସ୍କୃତ ଓ ପ୍ରାକୃତରେ ରାଜାଜ୍ଞା ପ୍ରଦତ୍ତ ହେଲା, ଏବଂ ପୁଣି ଯେତେବେଳେ ତେଲୁଗୁ-ଓଡ଼ିଆ ଏବଂ ତେଲୁଗୁ ଲିପିରେ ଓଡ଼ିଆ ଭାଷାର ଅଭିଲେଖ ଉତ୍କୀର୍ଣ୍ଣ ହେଲା,

ସେତେବେଳେ କ'ଣ ପ୍ରଜାମାନେ ଦୋଭାଷୀ ଥିଲେ ? ଦାକ୍ଷିଣାତ୍ୟରୁ ଗଙ୍ଗବଂଶୀୟ ଆସିଥିବାରୁ ବୋଧହୁଏ ତେଲୁଗୁ ଭାଷା ଓ ଲିପି ବ୍ୟବହାର କରିଥିଲେ । କିନ୍ତୁ ତେଲୁଗୁ, ପାଲି, ପ୍ରାକୃତ ସଂସ୍କୃତ ପରି ଓଡ଼ିଆ ଭାଷାର ନିକଟବର୍ତ୍ତୀ ନୁହେଁ । ଏହି ଅସୁବିଧା ଯୋଗୁଁ ହିଁ ତେଲୁଗୁ ସହ ଓଡ଼ିଆ ଭାଷାର ବ୍ୟବହାର କରାଗଲା । ଏଥିରେ ଦେଶର ଭାଷାକୁ ନିଶ୍ଚିତଭାବେ ମହତ୍ତ୍ୱ ଦିଆଯାଇଥିଲା, କିନ୍ତୁ ଏହାର କାରଣ ଭିନ୍ନ ଥିଲା । ପୁଣି ସେଇ କଥା ପାର୍ଶି ଓ ଓଡ଼ିଆ ଭାଷାରେ ପ୍ରଦତ୍ତ ଅନୁଶାସନରୁ ହିଁ ଜଣାଯାଏ । ଏଥିରୁ ଏକଥା ପ୍ରମାଣିତ ହୁଏ ଯେ ଅନୁଶାସନର ଭାଷା ସବୁବେଳେ ରାଜାଙ୍କର ଭାଷା ଥିଲା । ତ୍ରୟୋଦଶ ଶତାବ୍ଦୀରେ ଇଂରେଜ ଭାଷା ବିକଶିତ ହୋଇଯାଇଥିଲେ ହେଁ, ଇଂଲଣ୍ଡର ସମ୍ରାଟ ଭାଷଣ ଦେଲାବେଳେ ଫ୍ରେଞ୍ଚ ଭାଷାରେ ଭାଷଣ ଦେଉଥିଲେ । ପ୍ରଜାଙ୍କଠାରୁ ଦୂରତ୍ୱ ରଖିବା ପାଇଁ ଏହା ଅତ୍ୟନ୍ତ ଆବଶ୍ୟକ ଥିଲା । ସଂସ୍କୃତ ନାଟକରେ ସଂସ୍କୃତ ଓ ପ୍ରାକୃତ ଭାଷା ବ୍ୟବହାରର ଯେଉଁ ନିୟମ ଅନୁସୃତ ହୁଏ ସେଥିରେ ସମ୍ଭ୍ରାନ୍ତଙ୍କ ପାଇଁ ସଂସ୍କୃତ, ନୀଚ ଜାତୀୟ ଲୋକଙ୍କ ପାଇଁ ପ୍ରାକୃତ ବ୍ୟବହୃତ ହେଉଥିଲା । ଆଧୁନିକ ଯୁଗରେ ଭାରତ ସ୍ୱାଧୀନ ହୋଇଥିଲେ ହେଁ ଶାସକ ଓ ଶାସିତଙ୍କ ପାର୍ଥକ୍ୟ ରଖିବାପାଇଁ, ଲୋକେ ଓଡ଼ିଆ ଓ ବଙ୍ଗଳା କହୁଥିଲେ ହେଁ, ଶାସକ ଦାୟିତ୍ୱରେଥିବା କର୍ମଚାରୀମାନେ ଇଂରେଜୀ ଭାଷାକୁ ହିଁ ପସନ୍ଦ କରିଥାନ୍ତି । ଖାରବେଳଙ୍କ ପୂର୍ବ ବଂଶଧରମାନେ ଯଦି ଉତ୍ତର ଭରତରୁ ଆସିଥିବେ, ତା'ହେଲେ ସେ ସେହି ଅଞ୍ଚଳର ଭାଷାକୁ ହିଁ ବ୍ୟବହାର କରିଥିବେ । କଳିଙ୍ଗରେ ଅନୁଶାସନଟି ପ୍ରଦତ୍ତ ହୋଇଥିବାରୁ ଏଥିରେ ଏ ଦେଶରେ ପ୍ରଚଳିତ ଭାଷାର ପ୍ରକୃତି ଅନୁପ୍ରବେଶ କରିଥିବା ବିଚିତ୍ର ନୁହେଁ । ପାଲିଭାଷାରୁ ଏଥିରେ ପରିଦୃଷ୍ଟ ହେଉଥିବା ପାର୍ଥକ୍ୟ କେବଳ ଆଞ୍ଚଳିକ । ଭୌମ ବଂଶୀୟ ଶୁଦ୍ଧ ସଂସ୍କୃତ ପୁଣି ଦୁଇ ଅର୍ଥ ପ୍ରକାଶ କରୁଥିବା ସଂସ୍କୃତ ଭାଷା ମଧ୍ୟରେ ଓଡ଼ିଆ ଶବ୍ଦସବୁ ଅନୁପ୍ରବେଶ କରିଥିବା ଏହାର ଅନ୍ୟତମ ପ୍ରମାଣ । ଏହାକୁ ଲେଖନକାରଙ୍କର ଦୋଷ ଓ ଓଡ଼ିଆଭାଷାର ପ୍ରଭାବ ଯେପରି କୁହାଯାଇଥାଏ, ସେହିପରି ଖାରବେଳଙ୍କ ଅନୁଶାସନରେ ଥିବା ବିଚ୍ୟୁତି ପାଇଁ ମଧ କୁହାଯାଇପାରେ ।

ଏହାସତ୍ତ୍ୱେ ରାଜାଙ୍କ ପ୍ରଦତ୍ତ ଅନୁଶାସନ ସବୁରୁ ଏ ଦେଶରେ ପ୍ରଚଳିତ ବିଭିନ୍ନ ଭାଷା ସମ୍ବନ୍ଧରେ ଏକ ସ୍ଥୂଳଧାରଣା ଜାତ ହୁଏ । ଏ ଦେଶରେ ଯେତେବେଳେ ଯେଉଁ ଧର୍ମାବଲମ୍ବୀ ରାଜା ରାଜତ୍ୱ କଲେ, ସେତେବେଳେ ସେହି ଧର୍ମ-ପ୍ରଚଳିତ ଭାଷା ହିଁ ଏ ଦେଶରେ ବହୁଳ ଭାବେ ପ୍ରସାରିତ ହୋଇଥିଲା । ସେଥିପାଇଁ ବୌଦ୍ଧ-ଅଶୋକ ବ୍ୟବହାର କଲେ ପାଲିଭାଷା, ଜୈନ ଖାରବେଳ ପ୍ରୟୋଗ କଲେ ଅର୍ଦ୍ଧ-ମାଗଧୀ ପ୍ରାକୃତ । ସେହିପରି ହିନ୍ଦୁ ସମ୍ରାଟମାନେ ସଂସ୍କୃତ ଭାଷାକୁ ପ୍ରାଧାନ୍ୟ ଦେଇଥିଲେ । ଏହିପରିଭାବେ ପାଲି, ପ୍ରାକୃତ, ଓ ସଂସ୍କୃତ ଭାଷା ଏ ଦେଶରେ ସମୟ କ୍ରମରେ ବ୍ୟବହୃତ ହେଲା ଓ ଏହିପରି ଭାବେ ଓଡ଼ିଆ ଭାଷାର ବିକାଶ ସମ୍ଭବ ହୋଇଥିଲା ।

ଖାରବେଳଙ୍କ ଅନୁଶାସନ ଖୋଦିତ ହେବାର ବହୁପରେ ଗଣଙ୍କ ଉଦ୍ରଖ ଶିଳାଲେଖ (୩ୟ ଶତାବ୍ଦୀ) ଓ ଧର୍ମରାଜ ଦେବଙ୍କ ପ୍ରଦତ୍ତ ନିବିନା ଗ୍ରାମ ସମ୍ବନ୍ଧୀ ତାମ୍ରଶାସନ (ପଞ୍ଚମ

ଶତାବ୍ଦୀ) ରୁ ପ୍ରାକୃତ ଭାଷାର ପରିଚୟ ମିଳେ। ଓଡ଼ିଆ ଭାଷାର ବିକାଶ ଦୃଷ୍ଟିରୁ ଏହି ଅଭିଲେଖ ଓ ତାମ୍ରଶାସନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ତାମ୍ର ଶାସନର ଆରମ୍ଭ ଓ ଶେଷ ସଂସ୍କୃତ ଭାଷାରେ ଓ ମଧ୍ୟ ଅଂଶ ଅର୍ଥାତ ଦାନର ବିବରଣ ଓ ଗ୍ରାମର ସୀମା ପ୍ରାକୃତ ଭାଷାରେ ଲିଖିତ । ବିଶ୍ୱନାଥ କବିରାଜ କୃତ **କୁବଳୟାଶ୍ୱ ଚରିତ** ଓ ମାର୍କଣ୍ଡେୟକୃତ **ପ୍ରାକୃତ ସର୍ବସ୍ୱ**ରେ ଓଡ଼ିଶାରେ ପ୍ରାକୃତ ଭାଷା ଆଲୋଚନାର ପରଂପରା ସଂରକ୍ଷିତ ଥିଲେ ହେଁ , ଗଣ ଓ ନିବିନା ଅଭିଲେଖରେ ଓଡ଼ିଶାର ଆଦି-ପ୍ରାକୃତର ପରିଚୟ ମିଳେ । ନିବିନା ତାମ୍ରଶାସନର ପ୍ରାକୃତ ପଂକ୍ତିଗୁଡ଼ିକ ହେଉଛି :

(୬) ଗ୍ରାମସ୍ୟ ଶିମା କତ ।

(୭) ପଶ୍ଚିମ ଦିଶିହି ତୃକୁଟ ଆଡ଼ପାପାଦି ବଣରାଛ ବାଲ୍ମୀକ ବଙ୍କସିଳ ବଣରାଇ ଉତ୍ତର ଦିଶହି ତୃକୁଟ ପାଣି ସାଣତରି ମଣିବାଯୈବଣି ।

(୮) ଉତ୍ତର ଦିସହି ଦିଘଶିଳ ।

(୯) ପୂବେ ହି ଅତବଣରାଇ ବାଡ଼ ।

(୧୦) ପୂବ ଉତ୍ତର କୋଣେ ହି ସୋମଣି ତୃକୁଟ ।

(୧୧) ପୂବ ଦଖିଣ ହି ସେ ....ମ ତୃକୁଟ ।

(୧୨) ପୂବ ଦିସହି ଖୋଳାଡ଼ ।

(୧୩) ପୂବ ଦଖିଣକୋଣ ହି ବାଘଗୁହୁ ତୃକୁଟ ।

(୧୪) ଦଖିଣ ହି ପବଜିସିଳ ରାଡ଼ି ସ୍ରାବତିଣ୍ଡପୁର ବିଂଶତ୍ ଟିମ୍ମିଭ ।

(୧୫) ସମୃତ୍ ବୈଶାଖ ।

(୧୬) ସୁଦି ପ୍ରଥମ ପକ୍ଷ ଦ୍ୱିତୀୟା ।

ଏହି ତାମ୍ର ଶାସନରେ 'ଗ୍ରାମସ୍ୟ', 'ବିଂଶଦଟିମ୍ମି ରଃ', ଶବ୍ଦ ସଂସ୍କୃତ ; 'ପଶ୍ଚିମ', 'ଉତ୍ତର', 'ପୂର୍ବ', 'ଦକ୍ଷିଣ' ଶବ୍ଦ ତତସମ୍ ; ଓ ଅନ୍ୟଗୁଡ଼ିକ ପ୍ରାକୃତ। ଏଥିରେ ପ୍ରଯୁକ୍ତ ପ୍ରାକୃତ ଶବ୍ଦଗୁଡ଼ିକ ବହୁ ଦୃଷ୍ଟିରୁ ପ୍ରାକୃତ ଶବ୍ଦମାଳାଠାରୁ ପୃଥକ। ଉଦାହରଣ ପାଇଁ ନିମ୍ନରେ କେତେକ ଶବ୍ଦ ପ୍ରଦତ୍ତ ହେଲା ।

| **ନିବିନା** | **ପ୍ରାକୃତ** | **ସଂସ୍କୃତ** |
|---|---|---|
| ତୃକୁଟ | ତିକୂଡ଼ | ତ୍ରିକୁଟ |
| ପୂବ | ପୂବ୍ବ | ପୂର୍ବ |

| | | |
|---|---|---|
| କୁ (ତ) | କର | କୃତ |
| ପାଣି | ପାଣିଅ | ପାନୀୟ |
| ସାଶତ | ସାମୟ | ଶାଶ୍ୱତ |
| ଗାଡ଼ି | ଗଢ଼ଡ଼ | ଗର୍ତ୍ତ |

ଏଥିରେ ବଙ୍କ > ବକ୍ର, ରାଇ > ରାଜି ପ୍ରଭୃତି ଅବିକଳ ପ୍ରାକୃତ ଶବ୍ଦ ମଧ୍ୟ ଦେଖିବାକୁ ମିଳେ । ସପ୍ତମୀ ଅଧିକାରଣ କାରକର ସଙ୍କେତ ରୂପେ 'ହିଁ' ର ବ୍ୟବହାର ପୁବ ହି, ବିସହି, ଦଖିଣ ହି ପ୍ରଭୃତି ଶବ୍ଦରେ ଦେଖିବାକୁ ମିଳେ । ଭଦ୍ରଖ ଅଭିଲେଖରେ ପ୍ରଯୁକ୍ତ ଶବ୍ଦାବଳୀ ମଧ୍ୟ ପ୍ରାକୃତର ନିୟମକୁ ପୂର୍ଣ୍ଣଭାବରେ ପାଳନ କରି ନ ଥିଲା । ଏଥିରେ ଥିବା 'ମେଢ଼' ଶବ୍ଦରେ ଓଡ଼ିଆ ଭାଷାର ପୂର୍ବ ସଂକେତ ନିହିତ ।

ଓଡ଼ିଶାରୁ ମିଳୁଥିବା ଏହି ଦୁଇଟି ପ୍ରାକୃତ ଅଭିଲେଖ ବ୍ୟତୀତ ସିଂହଳ ଦେଶରେ ଓଡ଼ିଶାର ନିଂଶଙ୍କ ମଲ୍ଲଙ୍କ ପ୍ରଦତ୍ତ ରଣକୋଟ ଶିଳାଲିପିର ଭାଷାରୁ ଐତିହାସିକ ସତ୍ୟନାରାୟଣ ରାଜଗୁରୁ କେତେକ ଓଡ଼ିଆ ବା ଉଡ୍ର ପ୍ରାକୃତ ଶବ୍ଦର ଉଦାହରଣ ଦେଇଛନ୍ତି ।

| **ସିଂହଳ ଶିଳାଲିପିର ଶବ୍ଦ** | **ଓଡ଼ିଆ ଶବ୍ଦ** |
|---|---|
| ପଟଣ | ପାଟଣା (ପତ୍ତନ) |
| ଯେହିତୁଂ | ଏ ହେତୁ |
| ଯେହି | ଏହି |
| ଦଳୀବେଦରା | ଦଳ ବେହେରା |
| ବିସୋବଣରୁ ବଂଶେ | ବିଶ୍ୱବରୁଣ ବଂଶେ |
| ଗଣିତନେ ସମୟେ | ଗଣିବା ସମୟେ |
| କଏର ଏବୁ | କରାଇବୁ |
| ବଦରା | ବେହେରା |
| ବୋହୋ ସଏପତ ଦେବା | ବହୁ ସମ୍ପତ୍ତି ଦେବା |
| କୋଟ ବଦରା | କୋଠ ବେହେରା |

ଏହି ପ୍ରାକୃତ ଅଭିଲେଖ ପରେ ଓଡ଼ିଶାରୁ ବହୁ ସଂଖ୍ୟାରେ ସଂସ୍କୃତ ଅଭିଲେଖମାନ ଉପଲବ୍ଧ ହୋଇଥାଏ । ଏଥିରୁ କେତେକରେ କାବ୍ୟ ରୀତିରେ ଦୁଇ ଅର୍ଥ ବିଶିଷ୍ଟ ଶବ୍ଦ ସବୁ ବ୍ୟବହୃତ ହେଉଥିଲା । ଏହାର ଭାଷା ପ୍ରାୟ ଶୁଦ୍ଧ ଥିଲେ ହେଁ, ଏଥିରେ ଥିର> ସ୍ଥିର, ପୁବା> ପୂର୍ବ, ପଦୁମ > ପଦ୍ମ, ତାମ୍ବା > ତାମ୍ର ପ୍ରଭୃତି ବିକୃତ ଶବ୍ଦ ମଧ୍ୟ ଦେଖିବାକୁ ମିଳେ । ଏହା ବ୍ୟତୀତ ଭିମତ, ନବ୍ବତ , ଉନ୍ନତ ସିଂଘ, ଓ ଲୋନଭାର ପ୍ରଭୃତି ଶବ୍ଦରେ ଆଞ୍ଚଳିକ ପ୍ରଭାବ ଅତି ସ୍ପଷ୍ଟ ।

ଏହିପରି ପାଲି, ପ୍ରାକୃତ ଓ ସଂସ୍କୃତ ଭାଷାର ଅଭିଲେଖ ଗୁଡ଼ିକରେ ଓଡ଼ିଆ ଭାଷା ଗଠନର ପ୍ରଚେଷ୍ଟା ଦେଖିବାକୁ ମିଳୁଥିଲେ ହେଁ, ଦଶମ ବା ଏକାଦଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ସବୁପ୍ରକାର ପ୍ରାଚୀନ ପରଂପରାକୁ ପଛକୁ ଠେଲିଦେଇ ନିଜ ରୂପରେ ଆତ୍ମପ୍ରକାଶ କଲା । ଓଡ଼ିଆ ଭାଷାର ପ୍ରାଚୀନ ଶିଳାଲେଖ ଭାବେ (୧) କୋଣାର୍କ ଶିଳାଲେଖ, (୨) ଉରଜାଂ ଶିଳାଲେଖ, (୩) ଦେବଳ ଦେବଙ୍କ ଶିଳାଲେଖ, (୪) ଚଣ୍ଡିବେଢ଼ା ଶିଳାଲିପି ଓ (୫) ଅନନ୍ତ ବର୍ମା ବଜ୍ରହସ୍ତ ଦେବଙ୍କ ସମୟର ଗୁଣ୍ଡ ମନାୟକାଣୀ ଶିଳାଲେଖକୁ ଉଲ୍ଲେଖ କରାଯାଇପାରେ । ଏ ସବୁ ମଧ୍ୟରୁ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଙ୍କ ମତରେ ଉରଜାଂ ଶିଳାଲେଖ ସର୍ବ ପ୍ରାଚୀନ । ଏହାର ସମୟ ହେଉଛି ୧୦୫୧ ଖ୍ରୀଷ୍ଟାବ୍ଦ ।

ସଂସ୍କୃତ, ପାଲି, ପ୍ରାକୃତ ଭାଷା ଏକଦା ଏ ଦେଶରେ ରାଜଭାଷା ରୂପେ ବ୍ୟବହୃତ ହେଉଥିଲେ ହେଁ, ଓଡ଼ିଆ ସାହିତ୍ୟର ଆରମ୍ଭ ବେଳକୁ ସଂସ୍କୃତ କାବ୍ୟ, ନାଟକ, ପୁରାଣ ଏ ଦେଶରେ ଅତ୍ୟନ୍ତ ଲୋକପ୍ରିୟ ଥିଲା । ତେଣୁ ସେ ସବୁରୁ ଉପାଦାନ ସଂଗ୍ରହ କରି ଓଡ଼ିଆ କବିମାନେ ନିଜ କାବ୍ୟ ଓ ପୁରାଣକୁ ସମୃଦ୍ଧ କରିଥିଲେ । ଏହି ମୁଖ୍ୟ ପ୍ରଭାବ ସତ୍ତ୍ୱେ ଓଡ଼ିଆ ସାହିତ୍ୟର ଆଙ୍ଗିକ ଓ ଆତ୍ମିକ ବିକାଶରେ ପାଲି, ପ୍ରାକୃତ ଓ ଅପଭ୍ରଂଶ ଭାଷାର ପ୍ରଭାବ ନିରୀକ୍ଷଣ କରିହୁଏ । ଏ ଦେଶରେ ପାଲି, ପ୍ରାକୃତ ଭାଷା ପ୍ରଚଳିତ ଥିବାବେଳେ ଓଡ଼ିଆ ଭାଷାର ସୃଷ୍ଟି ହୋଇ ନ ଥିଲା । ସେଥିପାଇଁ ଏସବୁ ଅପେକ୍ଷା ଅପଭ୍ରଂଶ ଭାଷାର ପ୍ରଭାବ ହିଁ ବେଶୀ ଭାବରେ ଦେଖିବାକୁ ମିଳେ । ସେଥିପାଇଁ ନିମ୍ନରେ ଅପଭ୍ରଂଶ ଭାଷାର ଉଦ୍ଭବ, ବିକାଶ ଓ ଓଡ଼ିଆ ସାହିତ୍ୟ ଉପରେ ଏହାର ପ୍ରଭାବ ସମ୍ବନ୍ଧରେ ସଂକ୍ଷେପରେ ଆଲୋଚନା କରାଯାଇଛି ।

ସଂସ୍କୃତର ସାଧୁ ଶବ୍ଦ ବ୍ୟତୀତ ଅନ୍ୟ ଶବ୍ଦକୁ ପତଞ୍ଜଳି ତାଙ୍କ **ମହାଭାଷ୍ୟ**ରେ 'ଅପଶବ୍ଦ' ବା 'ଅପଭ୍ରଂଶ' (ପତିତ) ସଂଜ୍ଞା ଦେଇଥିଲେ । ଭରତ ମୁନି ଏପରି ଶବ୍ଦକୁ 'ବିଭ୍ରଷ୍ଟ' କହୁଥିଲେ । ଏ ସବୁର ଅପଭ୍ରଂଶ ଭାଷା ସହ କୌଣସି ସଂପର୍କ ନ ଥିଲା । କାବ୍ୟାଳଙ୍କାର ରଚୟିତା ଭାମହ ହିଁ ପ୍ରଥମେ ଅପଭ୍ରଂଶକୁ ସାହିତ୍ୟିକ ଭାଷା ରୂପେ ଗ୍ରହଣ କଲେ । ଏହାପରେ ଦଣ୍ଡୀ, ଆନନ୍ଦବର୍ଦ୍ଧନ, ମମ୍ମଟ, ଭୋଜ, ବାଗ୍‌ଭଟ, ରାମଚନ୍ଦ୍ର, ଗୁଣଭଦ୍ର, ଜିନଦତ୍ତ ଓ ଅମରଚନ୍ଦ୍ର ପ୍ରଭୃତି ଆଳଙ୍କାରିକମାନେ ଅପଭ୍ରଂଶକୁ ଏକ ସାହିତ୍ୟିକ ଭାଷା ରୂପେ ସ୍ୱୀକାର କରିଥିଲେ ହେଁ, ହେମଚନ୍ଦ୍ର ହିଁ ପ୍ରଥମେ ଅପଭ୍ରଂଶ ଭାଷାର ବିସ୍ତୃତ ବ୍ୟାକରଣ ରଚନା କଲେ ।

ସାହିତ୍ୟିକ ଭାଷାଭାବେ ଅପଭ୍ରଂଶ ବହୁ ପ୍ରାଚୀନ କାଳରୁ ପ୍ରଯୁକ୍ତ ହେଉଥିଲା । ଆଲୋଚକଙ୍କ ମତରେ ଏହାର ସାହିତ୍ୟିକ ପ୍ରୟୋଗ ଅଷ୍ଟମ ଶତାବ୍ଦୀ ପୂର୍ବରୁ ହିଁ ଆରମ୍ଭ ହୋଇଥିଲା । କିନ୍ତୁ ପ୍ରକୃତରେ ଅଷ୍ଟମ, ନବମ ଓ ଦଶମ ଶତାବ୍ଦୀ ହିଁ ଥିଲା ଅପଭ୍ରଂଶ ଭାଷାର ଉତ୍କର୍ଷ କାଳ । ଚତୁର୍ମୁଖ, ଦ୍ରୋଣ, ସ୍ୱୟମ୍ଭୁ, ପୁଷ୍ପଦନ୍ତ, ଯୋଗୀନ୍ଦ୍ର ତଥା ବୌଦ୍ଧ ସିଦ୍ଧମାନେ ଏହି ଯୁଗର ପ୍ରତିଭାଶାଳୀ କବି ଥିଲେ, ଓ ବହୁ ଗ୍ରନ୍ଥର ରଚୟିତା ଭାବେ ପ୍ରସିଦ୍ଧି ଲାଭ କରିଥିଲେ ।

ବିଦର୍ଭ, ଗୁଜରାଟ, ରାଜସ୍ଥାନ, ମଧ୍ୟଦେଶ, ମିଥିଳା ଓ ମଗଧ ଏମାନଙ୍କର ବାସସ୍ଥାନ ଥିଲା । ଡକ୍ଟର ଗ୍ରୀୟରସେନଙ୍କ ଅନୁମାନ ଅନୁଯାୟୀ ପ୍ରତ୍ୟେକ ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷାର ଏକ ପୂର୍ବବର୍ତ୍ତୀ ଅପଭ୍ରଂଶ ଥିଲା, କିନ୍ତୁ ସବୁ ଭାଷାରେ ଅପଭ୍ରଂଶ ସାହିତ୍ୟ ଉପଲବ୍ଧ ହୁଏ ନାହିଁ । ହୁଏତ ଏଥିମଧ୍ୟରୁ ଅନେକ ଅପଭ୍ରଂଶକୁ ସାହିତ୍ୟିକ ମର୍ଯ୍ୟାଦା ମିଳି ନ ଥିଲା । ପୁଣି ବ୍ରାହ୍ମଣ, ଜୈନ, ବୌଦ୍ଧ ସଂପ୍ରଦାୟର ଲୋକେ ଏବଂ ଭାରତର ପୂର୍ବ, ପଶ୍ଚିମ, ଦକ୍ଷିଣ ଓ ମଧ୍ୟଦେଶର ଅଧିବାସୀମାନେ ଶୌରସେନୀ ଅପଭ୍ରଂଶରେ ସାହିତ୍ୟ ରଚନା କରୁଥିଲେ । ସେଥିପାଇଁ ମିଥିଳାର ବିଦ୍ୟାପତି ଓ ସିଦ୍ଧମାନେ ଏହି ଭାଷାକୁ ହିଁ ତାଙ୍କ ଗ୍ରନ୍ଥରେ ବ୍ୟବହାର କରିଥିଲେ । ଏହା ବ୍ୟତୀତ ମାଗଧୀ ଓ କାଶ୍ମିରୀ ଅପଭ୍ରଂଶ ଦ୍ୱାରା ପ୍ରଭାବିତ କେତେକ ଗ୍ରନ୍ଥ ମିଳିଥାଏ । ମିଳୁଥିବା ଗ୍ରନ୍ଥ ସବୁ ଉପରେ ନିର୍ଭର କରି ଅପଭ୍ରଂଶ ସାହିତ୍ୟକୁ ନିମ୍ନଭାବେ ବିଭାଗ କରାଯାଇପାରେ ।

୧। ପଶ୍ଚିମାଞ୍ଚଳ - (ଶୌରସେନୀ : ହିନ୍ଦୀ ଓ ଗୁଜରାଟର ପ୍ରତିନିଧିତ୍ୱ କରୁଥିବା ) କାଳିଦାସଙ୍କ **ବିକ୍ରମୋର୍ବଶୀ**ରେ ଥିବା ଅପଭ୍ରଂଶ ପଦ- ସ୍ୱୟମ୍ଭୁ, ଯୋଗୀନ୍ଦ୍ର, ଦେବସେନ, ରାମସିଂହ, ଧନପାଳ, ନୟନାନ୍ଦି, ଭୋଜ, ଧନଞ୍ଜୟ, ଜିନଦତ୍ତ, ଲକ୍ଷ୍ମଣ ଗଣି, ହରିଭଦ୍ର, ହେମଚନ୍ଦ୍ର, ସୋମପ୍ରଭ, ଅବଦୁଲ ରହମାନ, ଯଶକୀର୍ତ୍ତି, ରୟଧୁ ଆଦି କବିଙ୍କୁ ଗୁଜରାଟ ଓ ମଧ୍ୟଦେଶର ଅପଭ୍ରଂଶ ଭାଷାର ପ୍ରତିନିଧି କବି ଭାବରେ ଗ୍ରହଣ କରାଯାଇପାରେ ।

୨। ମହାରାଷ୍ଟ୍ର ପ୍ରଦେଶ - ପୁଷ୍ପଦନ୍ତ ଓ କନକାମର ଆଧୁନିକ ମହାରାଷ୍ଟ୍ରର ସମୀପବର୍ତ୍ତୀ ଅଞ୍ଚଳରେ ବାସ କରୁଥିଲେ । ସେଥିପାଇଁ ସେମାନଙ୍କ ଗ୍ରନ୍ଥରେ ମହାରାଷ୍ଟ୍ରୀ ଭାଷାର ବହୁ ଶବ୍ଦ ମିଳିଥାଏ । କିନ୍ତୁ ଏଥିରେ ଶୌରସେନୀ ଅପଭ୍ରଂଶର ପ୍ରଭାବ ଅତି ସ୍ପଷ୍ଟ ।

୩। ପୂର୍ବାଞ୍ଚଳର ଅପଭ୍ରଂଶ-(ମାଗଧୀ ଅପଭ୍ରଂଶର ଅଞ୍ଚଳ-ପୂର୍ବୀ ହିନ୍ଦୀ, ମୈଥିଳୀ, ବଙ୍ଗାଳୀ ଓ ଓଡ଼ିଆ ଆଦି) **ଦୋହାକୋଷ, ଚର୍ଯାପଦ, ଡାକାର୍ଣ୍ଣବ ତନ୍ତ୍ର, କୀର୍ତ୍ତିଲତା, କୀର୍ତ୍ତିପତାକା, ପ୍ରାକୃତ ପୈଙ୍ଗଳର** କେତକ ପଦ ତଥା **ସେକେଦେଶ ଟୀକା** ଆଦିର ରଚନା ଭାରତର ପୂର୍ବାଞ୍ଚଳରେ ହିଁ ହୋଇଥିଲା । ସେଥିପାଇଁ ଏ ସବୁ ଗ୍ରନ୍ଥର ଭାଷା ମୁଖ୍ୟତଃ ଶୌରସେନୀ ହେଲେ ହେଁ , ମାଗଧୀ ଅପଭ୍ରଂଶର କେତେକ ପ୍ରଯୋଗ ଏଥିରୁ ମିଳିଥାଏ ।

୪ । ଉତ୍ତରାଞ୍ଚଳର ଅପଭ୍ରଂଶ -(ପଞ୍ଜାବ, ଓ କାଶ୍ମୀର) ଗୋରଖନାଥ ଓ କାଶ୍ମୀର ଶୈବାଚାର୍ଯ୍ୟମାନଙ୍କ ଗ୍ରନ୍ଥ ଏଥିରେ ରଚିତ ।

ଭାରତର ସବୁ ଅଞ୍ଚଳରୁ ମିଳୁଥିବା ଅପଭ୍ରଂଶ ସାହିତ୍ୟ ଉପରେ ଶୌରସେନୀର ପ୍ରଭାବ ହିଁ ମୁଖ୍ୟ । ଡକ୍ଟର ତୋମରଙ୍କ ଅନୁମାନ ଯେ ଏହା ବୋଧହୁଏ ସେତେବେଳେ ସମସ୍ତ ଭାରତର କାବ୍ୟ-ଭାଷା ରୂପେ ପ୍ରତିଷ୍ଠିତ ହୋଇଥିଲା ।

ସଂପ୍ରଦାୟ ଦୃଷ୍ଟିରୁ ଅପଭ୍ରଂଶ ସାହିତ୍ୟକୁ, ଜୈନ, ବ୍ରାହ୍ମଣ, ବୌଦ୍ଧ ଓ ଶୈବ ଭାବେ

ବିଭକ୍ତ କରାଯାଇ ପାରେ । ଏଥିରୁ ଜୈନ ଓ ବ୍ରାହ୍ମଣ ଅପଭ୍ରଂଶରେ ସାହିତ୍ୟିକତା ଦେଖିବାକୁ ମିଳୁଥିବାବେଳେ ଶୈବ ଓ ବୌଦ୍ଧ ସାହିତ୍ୟ ବିଶେଷକରି ସଂପ୍ରଦାୟିକ ଦର୍ଶନର ବ୍ୟାଖ୍ୟା କରିଥାଏ ।

ଅପଭ୍ରଂଶ ସାହିତ୍ୟର ଏହି ସଂକ୍ଷିପ୍ତ ପରିଚୟରୁ ଏକଥା ସ୍ପଷ୍ଟ ଯେ ଭାରତର ସବୁ ଅଞ୍ଚଳର ଭାଷାକୁ ଶୌରସେନୀ ଅପଭ୍ରଂଶ ହିଁ ବିଶେଷ ଭାବେ ପ୍ରଭାବିତ କରିଥିଲା । ଏହି ଭାଷାର ଅପଭ୍ରଂଶ ସାହିତ୍ୟକୁ ମୁଖ୍ୟତଃ ,

(୧) ପ୍ରବନ୍ଧ ସାହିତ୍ୟ, (୨) ଧାର୍ମିକ ଅପଭ୍ରଂଶ ଓ (୩) ଐହିକତା ପରକ ଅପଭ୍ରଂଶ ରୂପେ ବିଭାଗ କରାଯାଇ ଥାଏ ।

ଅଷ୍ଟମ ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରଚିତ ହୋଇ ଥିବା ବିପୁଳ ଅପଭ୍ରଂଶ ସାହିତ୍ୟ ପରବର୍ତ୍ତୀ ଭାରତୀୟ ସାହିତ୍ୟକୁ ବିଭିନ୍ନଭାବେ ପ୍ରଭାବିତ କରିଥିଲା । ଓଡ଼ିଶାରୁ ଏ ପର୍ଯ୍ୟନ୍ତ କୌଣସି ଅପଭ୍ରଂଶ ସାହିତ୍ୟ ମିଳି ନ ଥିଲେ ହେଁ, ଅପଭ୍ରଂଶ ସାହିତ୍ୟର ପ୍ରଭାବକୁ ଅସ୍ୱୀକାର କରିହୁଏ ନାହିଁ । ନିମ୍ନରେ କେତେକ ପ୍ରଭାବର ଆଲୋଚନା ଦିଆଗଲା ।

**୧। କାବ୍ୟରୂପ :**

ଅପଭ୍ରଂଶ ସାହିତ୍ୟରେ ସାଧାରଣତଃ ତିନି ପ୍ରକାର କାବ୍ୟ ଦେଖିବାକୁ ମିଳିଥାଏ- (କ) ପ୍ରବନ୍ଧ କାବ୍ୟ, (ଖ) ଖଣ୍ଡ କାବ୍ୟ, ଓ (ଗ) ମୁକ୍ତକ ।

ପ୍ରବନ୍ଧ କାବ୍ୟ ମଧ୍ୟରେ ଚରିତ ବା କହା, । ରସ ପ୍ରଧାନ ଚରିତ ଓ କହାର ଦୁଇଟି ରୂପ ଦେଖିବାକୁ ମିଳେ । ପ୍ରେମାଖ୍ୟାନ ମୂଳକ କଳ୍ପିତ କଥା, ଓ ଐତିହାସିକ କଥା । ଓଡ଼ିଆ ସାହିତ୍ୟରେ ରାସ ଗ୍ରନ୍ଥ ମିଳୁଥିଲେ ହେଁ, ଏହା ଶ୍ରୀମଦ୍‌ଭାଗବତର 'ରାସ ପଞ୍ଚାଧ୍ୟାୟ' ଓ ଜୟଦେବଙ୍କ **ଗୀତ ଗୋବିନ୍ଦ** ଉପରେ ଆଧାରିତ ହୋଇ ଶରତ ଓ ବସନ୍ତ ରାସରେ ପରିଣତ ହୁଏ । ଅପଭ୍ରଂଶର **ବିସଲଦେବ ରାସୋ, ହମ୍ମୀର ରାସୋ**ପରି ଗ୍ରନ୍ଥ ଓଡ଼ିଆରେ ଦେଖିବାକୁ ମିଳେ ନାହିଁ । ସେହିପରି ଚରିତ କାବ୍ୟ ମଧ୍ୟରୁ ପ୍ରେମାଖ୍ୟାନକୁ ଗ୍ରହଣ କରିଥିବା କୁତୁବନ କୃତ **ମୃଗାବତୀ,** ମାଲିକ ମହମ୍ମଦ ଜାୟସୀ କୃତ **ପଦ୍ମାବତୀ,** ମଝନ କୃତ **ମଧୁମାଳତୀ,** ନୁର ମୁହମ୍ମଦ କୃତ **ଇନ୍ଦ୍ରାବତୀ** ଓ ଦୁଖହରନ ଦାସ କୃତ **ପୁହୁପାବତୀ** ସଦୃଶ ଓଡ଼ିଆରେ **ଲୀଳାବତୀ, କଳାବତୀ, ପରିମଳାବତୀ , କନକାବତୀ , ଲାବଣ୍ୟବତୀ, ଶୋଭାବତୀ** ଓ **ଇଚ୍ଛାବତୀ,** ପ୍ରଭୃତି କାବ୍ୟ ଦେଖିବାକୁ ମିଳେ । ନାମ ଶେଷରେ 'ବତୀ' ରଖି ଓ ନାୟିକାକୁ ପ୍ରାଧାନ୍ୟ ଦେଇ ଓଡ଼ିଆରେ କାବ୍ୟ ଲେଖିବାର ଯେଉଁ ପରଂପରା ପ୍ରଚଳିତ ହେଲା, ଏହା ଅପଭ୍ରଂଶରୁ ଆସିଥିବା ଅନୁମେୟ । ପ୍ରାକୃତ ସାହିତ୍ୟରେ **ଲୀଳାବତୀ** ବ୍ୟତୀତ ଏପରି ନାମକରଣ ଥିବା କାବ୍ୟ ଦେଖିବାକୁ ମିଳେ ନାହିଁ । 'ବତୀ'ପରି ଅପଭ୍ରଂଶ ସାହିତ୍ୟରେ ବିଳାସ, ରୂପକ, ପ୍ରକାଶ ରାସୋ

ବା ରାସକ ଆଖ୍ୟାଦେଇ ଚରିତ କାବ୍ୟ ସବୁ ଲେଖାଯାଇଥିଲା । ଓଡ଼ିଆରେ 'ରାସୋ' ବା 'ରସକ' ପରି ଗ୍ରନ୍ଥ ଦେଖିବାକୁ ମିଳେ ନାହିଁ । କିନ୍ତୁ 'ବିଳାସ'ର ପରଂପରା ହିନ୍ଦୀ ଓ ଓଡ଼ିଆରେ ଅତି ଲୋକପ୍ରିୟ ଥିଲା । ହିନ୍ଦୀ ସାହିତ୍ୟର **ରାଜବିଳାସ, ଜଗ ବିଳାସ, ରତନ ବିଳାସ, ଅଭୈଇ ବିଳାସ** ଓ **ଭୀମ ବିଳାସ**ପରି ଓଡ଼ିଆରେ ଲେଖାଗଲା **ରୁକ୍ମିଣୀ ବିଳାସ, ବୈଦେହୀଶ ବିଳାସ, ସୀତେସ ବିଳାସ, ଅମ୍ବିକା ବିଳାସ** ପ୍ରଭୃତି ଗ୍ରନ୍ଥ ! 'ପ୍ରକାଶ' ପରଂପରା ବିଶେଷ ଲୋକପ୍ରିୟ ନଥିଲେ ବି, କହ୍ନାଇ ଖୁଣ୍ଟିଆଙ୍କ ରଚିତ **ମହାଭାବ ପ୍ରକାଶ** ଏହି ବିଭାଗର ସୂଚନା ଦେଇଥାଏ ।

ଏହି 'ବତୀ'ସହ ଆଉ ଗୋଟିଏ ପରଂପରା ଓଡ଼ିଆ ସାହିତ୍ୟକୁ ଅପଭ୍ରଂଶରୁ ଆସିଥିଲା । ତାହା ହେଉଛି, ସିଂହଳ ଦେଶ ଓ ଏହାର ପଦ୍ମିନୀ କନ୍ୟା । ସଂସ୍କୃତ କବି ହର୍ଷଙ୍କ (ସପ୍ତମ ଶତାବ୍ଦୀ) **ରତ୍ନାବଳୀ ନାଟିକା**ର ନାୟିକା ହେଉଛି ସିଂହଳର ରାଜକନ୍ୟା । ଏହି ପରଂପରା ପ୍ରାକୃତ କବି କୌତୁହଳ **ଲୀଳାବତୀ**ରେ ଓ ଜିନହର୍ଷଗଣି କୃତ **ରତ୍ନଶେଖର ନରପତି କଥା** (ପଞ୍ଚଦଶ ଶତାବ୍ଦୀ)ରେ ଗୃହୀତ ହେଲା । ଅପଭ୍ରଂଶ ଭାଷାର କବିମାନଙ୍କ ମଧ୍ୟରୁ ଧନପାଳ (**ଭବିଷ୍ୟ ଦତ୍ତକଥା**), କନକାମର (**କରକଣ୍ଡ ଚରିତ**), ଲାଖୁ (**ଜିନ ଦତ୍ତ ଚରିତ**), ନରସେନ (**ଶ୍ରୀପାଳ ଚରିତ**) ଓ ମାଣିକ ରାଜଙ୍କ ରଚନାରେ ସିଂହଳର ପଦ୍ମିନୀ ଜାତୀୟା ସୁନ୍ଦରୀ ରାଜକନ୍ୟାର ଉଲ୍ଲେଖ କରାଯାଇଛି । ମାଲିକ ମହମ୍ମଦ ଜାୟସୀ ମଧ୍ୟ ଏହି ପରଂପରାକୁ **ପଦ୍ମାବତ୍** ରେ ଗ୍ରହଣ କରିଥିଲେ । ଉପେନ୍ଦ୍ର ଭଞ୍ଜଙ୍କ ପ୍ରସିଦ୍ଧ **ଲାବଣ୍ୟବତୀ** କାବ୍ୟରେ 'ବତୀ' ସହ ସିଂହଳ ପରଂପରା ମଧ୍ୟ ଗୃହୀତ । ଏହାବ୍ୟତୀତ ଦେବାଳୟରେ କନ୍ୟା ସାକ୍ଷାତ, ସ୍ୱପ୍ନରେ ପ୍ରେମିକ ଓ ପ୍ରେମିକାର ମିଳନ, ବୋଇତ ଯାତ୍ରା, ଲକ୍ଷ୍ମୀ ଓ ପାର୍ବତୀଙ୍କ ସହାୟତାରେ ପ୍ରେମିକ ପ୍ରାପ୍ତି ପ୍ରଭୃତି ପ୍ରସଙ୍ଗ ଅପଭ୍ରଂଶ ପରି ଓଡ଼ିଆ ସାହିତ୍ୟରେ ମଧ୍ୟ ମିଳିଥାଏ । କେବଳ ପ୍ରେମାଖ୍ୟାନ ମୂଳକ କଥା ନୁହେଁ , କୃଷ୍ଣ ଓ ରାମକଥାରେ ଥିବା ଲୌକିକତା ମଧ୍ୟ ପ୍ରାକୃତ ଅପଭ୍ରଂଶରୁ ଅସିଥିବା ଆଲୋଚକ ମାନଙ୍କର ମତ ।

ଭାରତୀୟ ସାହିତ୍ୟକୁ 'ରାଧା' ନାମ ହେଉଛି ଜୟଦେବଙ୍କର ଅନ୍ୟତମ ଦାନ । କିନ୍ତୁ 'ରାଧା' ଚରିତ୍ରର ବିକାଶ ପାଇଁ ଏକମାତ୍ର ଜୟଦେବ ଦାୟୀ ନ ଥିଲେ । ଏହାର ଲୌକିକ ଧାରାର ବିକାଶ ଜୟଦେବଙ୍କ ବହୁ ପୂର୍ବରୁ ଆରମ୍ଭ ହୋଇଯାଇଥିଲା । ଦଶମ ଶତାବ୍ଦୀର ଆନନ୍ଦବର୍ଦ୍ଧନ ତାଙ୍କ ଗ୍ରନ୍ଥରେ 'ରାଧା'ଙ୍କୁ ଉଲ୍ଲେଖ କରିଥିଲେ । ଉଦ୍ଧବଙ୍କୁ ଶ୍ରୀକୃଷ୍ଣ 'ରାଧା'ଙ୍କ ସମାଚାର ପଚାରି ତାଙ୍କ ବିଷୟରେ ବୁଝିବାକୁ ଚାହିଁଥିଲେ -

ତେସାଂ ଗୋପବଧୂ ବିଳାସ ସୁହୃଦଃ
                    ରାଧା ରହଃ ସାକ୍ଷୀଣାଂ
ଭଦ୍ର ଭଦ୍ର ! କଳିନ୍ଦ ରାଜତନୟା -
                    ତୀରେ ଲତା ବେଷ୍ଟନାମ୍ ।

ଏହି ଶ୍ଳୋକ ଆନନ୍ଦବର୍ଦ୍ଧନଙ୍କଠାରୁ ମଧ୍ୟ ପ୍ରାଚୀନ ହୋଇଥିବା ଜଣାଯାଏ, କାରଣ କ୍ଷେମେନ୍ଦ୍ରଙ୍କ **ଦଶାବତାର ଚରିତମ୍**ରେ 'ରାଧା' ଦେଖିବାକୁ ମିଳେ । **ବେଣୀସଂହାରମ୍** ନାଟକରେ ରାଧା ଓ କୃଷ୍ଣଙ୍କର ରାସଲୀଳାର ବର୍ଣ୍ଣନା କରାଯାଇଛି । ହେମଚନ୍ଦ୍ର ତାଙ୍କ ବ୍ୟାକରଣରେ ତାଙ୍କ ପୂର୍ବରୁ ପ୍ରଚଳିତ 'ରାଧା'ଙ୍କ ସମ୍ବନ୍ଧୀୟ କେତେକ ଅପଭ୍ରଂଶ ଦୋହା ସଂଗ୍ରହ କରିଛନ୍ତି । ସେଥିରେ ମଧ୍ୟ 'ରାଧା' ହେଉଛନ୍ତି ଗୋପି ମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଏହି ଦୋହାରେ କୁହାଯାଇଛି ଯେ ରାଧାଙ୍କ ବକ୍ଷସ୍ଥଳର ସୌନ୍ଦର୍ଯ୍ୟ ଦେଖି ଶ୍ରୀକୃଷ୍ଣ ପ୍ରାଙ୍ଗଣ ମଧ୍ୟରେ ନୃତ୍ୟ କରିବାକୁ ଆରମ୍ଭ କରି ଦେଇଥିଲେ । ଏହା ଦେଖି ସେଠାରେ ଉପସ୍ଥିତ ଥିବା ଲୋକମାନେ ଆଶ୍ଚର୍ଯ୍ୟ-ଚକିତ ହୋଇଯାଇ ଥିଲେ । ଦୋହାଟି ହେଲା ,

''ହରି ନଚ୍ଚାବିଉ ଅଂଗଣଇ ବିମ୍ହଇ

ପାଡ଼ିଉ ଲୋଉ ।

ଏମ୍ବହି ରାହ ପଓହରହଂ ଜଂ ଭାବଇ ତଂ ହୋଇ ।

(ପ୍ରା, ବ୍ୟା, ୪, ୪୨୦)

ହେମଚନ୍ଦ୍ରଙ୍କ ପରି ସ୍ୱୟମ୍ଭୁ, ପୁଷ୍ପଦନ୍ତ ପ୍ରଭୃତି ଅପଭ୍ରଂଶ ସାହିତ୍ୟର କବିମାନଙ୍କ ନିକଟରେ 'ରାଧା'ଙ୍କ ସମ୍ବନ୍ଧୀୟ ବହୁ ଲୌକିକ ଦୃଶ୍ୟ ଅତ୍ୟନ୍ତ ପ୍ରିୟ ଥିଲା । ସାରଳା ଦାସଙ୍କ ପରି ଓଡ଼ିଆ ସାହିତ୍ୟର ବହୁ ବିଶିଷ୍ଟ କବି 'ରାଧା କୃଷ୍ଣ' ଓ 'ରାମ'ଙ୍କ ସମ୍ବନ୍ଧୀୟ ପଦାବଳୀରେ ଯେଉଁସବୁ ଲୌକିକ ଦୃଶ୍ୟର ସମାବେଶ କରିଛନ୍ତି , ସେ ସବୁ ଏହି ପ୍ରାକୃତ ପଦାବଳୀରୁ ଆସିଥିବା ଅନୁମିତ ହୁଏ ।

ଡକ୍‌ଟର ହଜାରୀ ପ୍ରସାଦ ଦ୍ୱିବେଦୀ ପ୍ରାକୃତ ସାହିତ୍ୟର ଅନ୍ୟ ଗୋଟିଏ ପ୍ରଭାବ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ତାଙ୍କ ମତରେ ଦୁଇ ମହାପୁରୁଷଙ୍କ କଥୋପକଥନ ଛଳରେ ଦାର୍ଶନିକ ମତ ଓ ଧାର୍ମିକ ବିଶ୍ୱାସର ବିଶ୍ଳେଷଣ ବିଶେଷ, କରି ନାଥପନ୍ଥୀମାନଙ୍କ ଦ୍ୱାରା ଆରମ୍ଭ ହେଲା । ସମ୍ବାଦ ମାଧ୍ୟମରେ ସାଧନା ପଦ୍ଧତି ବିଚାରର ପରଂପରା ପୂର୍ବରୁ ଯେ ପ୍ରଚଳିତ ନ ଥିଲା ତାହା ନୁହେଁ, କିନ୍ତୁ ନାଥପନ୍ଥୀମାନେ ଏହାକୁ ପ୍ରାଧାନ୍ୟ ଦେଲେ । **ମଛେନ୍ଦ୍ର ଓ ଗୋରଖ ବୋଧ** ଏହିପରି ଏକ ଗ୍ରନ୍ଥ । ଏହା ହିନ୍ଦୀ ପରି ଓଡ଼ିଆରେ ମଧ୍ୟମିଳିଥାଏ । ଏଥିରେ ଗୋରଖ ହେଉଛନ୍ତି ପ୍ରଶ୍ନକର୍ତ୍ତା ଓ ମତ୍ସେନ୍ଦ୍ର ଉତ୍ତର ଦାତା । ତେଣୁ ଏହାକୁ ମତ୍ସେନ୍ଦ୍ରଙ୍କ ଗ୍ରନ୍ଥରୂପେ ଗ୍ରହଣ କରିବା ହିଁ ସ୍ୱାଭାବିକ । କିନ୍ତୁ ସାଧାରଣତଃ ଏହାକୁ ଗୋରଖନାଥଙ୍କ ଗ୍ରନ୍ଥ ରୂପେ ଗ୍ରହଣ କରାଯାଇଥାଏ । ଏହି ପରଂପରା ଅଚ୍ୟୁତଙ୍କ **ଶୂନ୍ୟସଂହିତା** ଓ ଅନ୍ୟାନ୍ୟ ଗ୍ରନ୍ଥରେ ଦେଖିବାକୁ ମିଳେ । କାହାରି କାହାରି ମତରେ ଏହି ପରଂପରାର ପରବର୍ତ୍ତୀ ସାଧକ ଏ ଗ୍ରନ୍ଥ ଲେଖି ନିଜ ଗୁରୁଙ୍କ ନାମରେ ପ୍ରଚଳିତ କରାଇଥିବା ଅସମ୍ଭବ ନୁହେଁ । ସେଥିପାଇଁ ଡକ୍‌ଟର ଦ୍ୱିବେଦୀ ଏପରି

ଗ୍ରନ୍ଥ ସବୁକୁ 'ସଂପ୍ରଦାୟ ବିଶ୍ୱାସ ସ୍ଥାପକ' ଗ୍ରନ୍ଥ ରୂପେ ଗ୍ରହଣ କରିଛନ୍ତି । ଭଗବାନଙ୍କ **ଯୋଗୀନ୍ଦ୍ରଙ୍କ ଦାଣ୍ଡଧୂଆ** ପଞ୍ଚସଖାଙ୍କ ରଚିତ ବହୁ ଗ୍ରନ୍ଥ ପରି ଏକ ବ୍ରହ୍ମଜ୍ଞାନମୂଳକ ରଚନା । ଏହି ଗ୍ରନ୍ଥରେ କବି ଭଗବାନ ଯୋଗୀନ୍ଦ୍ରଙ୍କୁ ସମ୍ବୋଧନ କରି ବ୍ରହ୍ମଜ୍ଞାନର ବ୍ୟାଖ୍ୟା କରିଥିଲେ ହେଁ, ଏହି ଗ୍ରନ୍ଥ ଯେଉଁ **ଅସ୍ପଷ୍ଟ** ସୂଚନା ଦିଏ, ତାହା ହେଉଛି, ଜୈନ ଅପଭ୍ରଂଶ ସାହିତ୍ୟର ପ୍ରସିଦ୍ଧ କବି ଯୋଗୀନ୍ଦ୍ରଙ୍କର । ତାଙ୍କ ରଚିତ **ପରମାତ୍ମା ପ୍ରକାଶ** ଓ **ଯୋଗସାର** ଯେ କେବଳ ଦୋହା ଛନ୍ଦରେ ରଚିତ ତାହା ନୁହେଁ, ଏଥିରେ ମଧ ଯୋଗୀନ୍ଦ୍ର ଯୋଗୀମାନଙ୍କୁ ବାରମ୍ବାର ସମ୍ବୋଧନ କରି ନୈତିକ ଉପଦେଶ ଦେଇଛନ୍ତି । ଯୋଗୀନ୍ଦ୍ର ଜୈନ ସଂପ୍ରଦାୟର ସାଧକ ଥିଲେ ହେଁ ତାଙ୍କ ଜିନ୍‌ଦେବ ହେଉଛନ୍ତି ପରମାତ୍ମା, ପରମପଦ, ହରି, ହର, ବ୍ରହ୍ମ ଓ ବୁଦ୍ଧ । ଏହି ଉଦାର ଦୃଷ୍ଟି କୋଣରୁ ସେ ସବୁ ପ୍ରକାର ସାଧକଙ୍କ ଦ୍ୱାରା ଆଦୃତ ହୋଇଥିବା ସ୍ୱାଭାବିକ । ଯୋଗୀନ୍ଦ୍ରଙ୍କ ଏହି ଉପଦେଶମାଳା ପରବର୍ତ୍ତୀ ଯୁଗରେ ବହୁ ଭାବେ ପରିବର୍ତ୍ତିତ ହୋଇ ଓଡ଼ିଆ ସାହିତ୍ୟରେ ପ୍ରବେଶ କରିଥିବା ବିଚିତ୍ର ନୁହେଁ । ଏହିପରି ଆଉ ଗୋଟିଏ ଅପଭଂଶ ଗ୍ରନ୍ଥ ହେଲା, ତ୍ରୟୋଦଶ ଶତାବ୍ଦୀରେ ରଚିତ **କୁମାର ପାଳ ପ୍ରତିବୋଧ** । ସୋମପ୍ରଭାଚାର୍ଯ୍ୟଙ୍କ ରଚିତ ଏହି ଗ୍ରନ୍ଥରେ ଜୀବ ମନଃ କରଣ ସଂଳାପ କଥା, ସ୍ଥୁଳିଭଦ୍ର କଥା, ଦ୍ୱାଦଶ-ଭାବନା-ସ୍ୱରୂପ, ପାର୍ଶ୍ୱସ୍ତୋତ୍ର ପ୍ରଭୃତି ପ୍ରକରଣ ସନ୍ନିବେଶିତ । ଏହି ଗ୍ରନ୍ଥ ପରି ଓଡ଼ିଆରେ ଅଜ୍ଞାତ କବିକୃତ **କୁମାରବୋଧ** ପ୍ରଚଳିତ । ନାମ-ସାଦୃଶ୍ୟ ସହ ଏଥିରେ ଜୀବ-ମନର ବ୍ୟାଖ୍ୟା ମଧ୍ୟ ପ୍ରଦତ୍ତ । ଏଥିରୁ ଓଡ଼ିଆ **କୁମାର ବୋଧ**ର ଅପଭ୍ରଂଶ ରଚିତ **କୁମାର ପ୍ରତିବୋଧ** ସହିତ ସମ୍ପର୍କ ଥିବା ଅନୁମାନ କରାଯାଇପାରେ ।

ଐହିକତାପରକ ଅପଭ୍ରଂଶ ସାହିତ୍ୟ ମଧରୁ ହେମଚନ୍ଦ୍ରଙ୍କ **ପ୍ରାକୃତାନୁଶାସନ** ଏବଂ ପ୍ରସିଦ୍ଧ **ପ୍ରାକୃତ ପୈଙ୍ଗଳ**ର ପ୍ରଭାବ ଓଡ଼ିଆ ସାହିତ୍ୟରେ ଅନୁସନ୍ଧାନ କରାଯାଇପାରେ । ଏହି ଦୁଇ ଗ୍ରନ୍ଥର ବୈଶିଷ୍ଟ୍ୟ ହେଉଛି ଯେ ଏଥିରେ ଭାରତର ବିଭିନ୍ନାଞ୍ଚଳର ଅପଭ୍ରଂଶ ପଦ ସବୁ ସଂଗୃହୀତ ହୋଇଥିଲା । ପିଶେଲ ଅନୁମାନ କରନ୍ତି ଯେ **ସତୀଇ** ସଦୃଶ କୌଣସି ଏକ ସଂଗ୍ରହ ଗ୍ରନ୍ଥ ବୋଧହୁଏ ଏହାର ଆଧାର ଗ୍ରନ୍ଥ । ପୁଣି ଏଥିରେ ଭାଷା ଭେଦ ତଥା କଳ୍ପନାର ବିଭିନ୍ନ ସ୍ତର ଥିବା ସମାଲୋଚକମାନେ ଅନୁସନ୍ଧାନ କରିଛନ୍ତି । ଶୃଙ୍ଗାର, ପ୍ରେମ, ବୀରରସାତ୍ମକ ଭକ୍ତି, ନୀତି, ସୁଭାଷିତ, ଅନ୍ୟୋକ୍ତି ଓ ଭକ୍ତି ସମ୍ବନ୍ଧିତ ବହୁ ପଦ ଏହାର ବୈଶିଷ୍ଟ୍ୟ । ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି କବି ଲେଖିଛନ୍ତି - "ସୁନ୍ଦରୀ ନାୟିକା ବଦନର କନକକାନ୍ତି ଦ୍ୱାରା ପରାଜିତ ହୋଇ ପ୍ରଫୁଲ୍ଲିତ କର୍ଣ୍ଣିକାର ବନବାସ କରୁଛି" । ପୁଣି-"ସୁନ୍ଦରୀ ନାୟିକାର ମୁଖ ସୌନ୍ଦର୍ଯ୍ୟରେ ପରାଜିତ ହୋଇ ଚନ୍ଦ୍ର ମେଘ ମଧ୍ୟରେ ଲୁଚି ଯାଇଛି" । ଅନ୍ୟସ୍ଥଳରେ ଅଛି-"ଶ୍ୟାମଳ ବର୍ଣ୍ଣର ବିଟଚମ୍ପକ ପୁଷ୍ପ ସଦୃଶ ପ୍ରିୟାସହ ମିଳିତ ହେବାବେଳେ କଷଟି ପଥର ଉପରେ ଅଙ୍କିତ ସୁନା ରେଖା ପରି ଶୋଭା ପାଉଛି "। ଏହିସବୁ ପଙ୍କ୍ତି ଓଡ଼ିଆ ସାହିତ୍ୟରେ ବାରମ୍ବାର ଦେଖିବାକୁ ମିଳେ । ଦୀନକୃଷ୍ଣ ଶ୍ୟାମଳ ବର୍ଣ୍ଣର ଶ୍ରୀକୃଷ୍ଣ ଓ କନକକାନ୍ତିନିଭା ଶ୍ରୀରାଧାଙ୍କ ମିଳନ କଲାବେଳେ

କଷଟି ଓ ସୁନା ରେଖାର କଳ୍ପନା କରିଛନ୍ତି । ହେମଚନ୍ଦ୍ରଙ୍କ ପରି **ପ୍ରାକୃତ ପୈଙ୍ଗଳର** କେତେ ପଦର ସାଦୃଶ୍ୟ ଓଡ଼ିଆରେ ଦେଖିବାକୁ ମିଳେ । ଓଡ଼ିଆରେ ଗୋଟିଏ ଢଗ ଅଛି ।

ମାଟି ମଟାଳ

ଗଣ୍ଡି ହେନ୍ତାଳ

ଘରଣୀ ଚେତାଳ

ସେ ଘର ରହିବ ଚିରକାଳ ।

**ପ୍ରାକୃତ ପୈଙ୍ଗଳ**ରେ ଜଣେ କୃଷକର ବର୍ଷାଋତୁ ସମ୍ବନ୍ଧରେ ଉକ୍ତି ହେଉଛି- ଯଦି ଘରର ଛାତ ଉଚ୍ଚ ହୁଏ, ଘରେ ବିନୟଶୀଳ ଘରଣୀ ଏବଂ ପ୍ରଚୁର ଧନ ଥାଏ, ତା'ହେଲେ ବର୍ଷାଋତୁ ସୁଖକର ହୁଏ ।

**୨ । ରଚନାଶୈଳୀ :**

କାବ୍ୟରୂପ ପରି ରଚନାଶୈଳୀରେ ଅପଭ୍ରଂଶର ପ୍ରଭାବ ଦେଖିବାକୁ ମିଳିଥାଏ । ଅଚ୍ୟୁତଙ୍କ **ଚାରିଖାନି**, ବଳରାମଙ୍କ **ବ୍ରହ୍ମାଣ୍ଡ-ଭୂଗୋଳ**, ଓ **ଅମରକୋଷ** ପ୍ରଭୃତି ଗ୍ରନ୍ଥରୁ 'ଦୋହା' ଛନ୍ଦ ଏ ଦେଶରେ ଏକଦା ଲୋକପ୍ରିୟ ଥିବା ଜଣାଯାଏ । ଅନେକ ସିଦ୍ଧ-ସାଧକ ଦୋହା ପଦ ସବୁକୁ କଣ୍ଠସ୍ଥ କରି ଲୋକଙ୍କ ସମ୍ମୁଖରେ ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରୁଥିବା ଏହିସବୁ ଗ୍ରନ୍ଥରେ ସୂଚିତ । ଅଚ୍ୟୁତ, ବଳରାମ ଓ **ଅମରକୋଷ**କାର, 'ଦୋହା', 'ସାକ୍ଷୀ' ଓ 'ଶବଦ'କୁ ଯେଉଁ ଭାବେ ଉଲ୍ଲେଖ କରିଛନ୍ତି, ସେଥିରେ ଆଦର ଅପେକ୍ଷା ଅନାଦର ଭାବ ହିଁ ବେଶୀ ସ୍ପଷ୍ଟ । ହିନ୍ଦୀ ସାହିତ୍ୟର ବିଶିଷ୍ଟ କବି ତୁଳସୀ ଦାସ ମଧ୍ୟ କାହାଣୀ, ଉପାଖ୍ୟାନ ମାଧ୍ୟମରେ ଧର୍ମ ନିରୂପଣ କରୁଥିବା କବିମାନଙ୍କୁ 'ଅଧମ' ଆଖ୍ୟା ଦେଇଛନ୍ତି ।

ସାକ୍ଷୀ, ସବଦି, ଦୋହାର କହି
କହନି ଉପଖାନ ।
ଭଗତି ନିରୂପହି ଅଧମ କବି
ନିନ୍ଦହି ବେଦ ପୁରାନ ।

କବୀର ଦାସଙ୍କ କଣ୍ଠରୁ ମଧ୍ୟ ସେହି ତୀବ୍ର ସ୍ୱର ଶୁଣିବାକୁ ମିଳେ ।

ମାଳା ପହିରେ ଟୋପୀ ପହିରେ
ଛାପ ତିଳକ ଅନୁମାନ
ସାକ୍ଷୀ ସବଦି ଗାଓତ ଭୁଲେଇ
ଆତମ ଖବର ନ ଯାନ ।

ହିନ୍ଦୀ ଓ ଓଡ଼ିଆ ସନ୍ଥମାନେ ସମସ୍ୱରରେ ଦୋହା ଗାଉଥିବା ସିଦ୍ଧ ସାଧକମାନଙ୍କୁ ନିନ୍ଦା କରୁଥିଲେ

ହେଁ, ଦୋହା ଛନ୍ଦକୁ ପରିତ୍ୟାଗ କରି ପାରି ନ ଥିଲେ ।

ଭଗବାନଙ୍କ ରଚିତ **ଯୋଗୀନ୍ଦ୍ର ଦାଣ୍ଡ ଧୂଆ**ରେ ଥିବା 'ଧୂଆ' ଶଦ୍ଦ ଦୋହା>ଦୁହା>ଡୁହା>ଧୂଆରେ ପରିଣତ ହୋଇଥିବା ଅନୁମେୟ । 'ଧୂଆ'କୁ 'ଦୋହା' ଅର୍ଥରେ ଗ୍ରହଣ ନକଲେ ଏହାର ପ୍ରକୃତ ଅର୍ଥ ପ୍ରକାଶ ପାଏ ନାହିଁ । ଅପଭ୍ରଂଶ ସାହିତ୍ୟର ଏହା ଏକ ବିଶିଷ୍ଟ ଛନ୍ଦ । ସଂସ୍କୃତର ଶ୍ଳୋକ, ପ୍ରାକୃତର ଗାହା ପରି, 'ଦୋହା' ହେଉଛି ଅପଭ୍ରଂଶର ଆପଣା ବୈଶିଷ୍ଟ୍ୟ । ଆଚାର୍ଯ୍ୟ ଦ୍ୱିବେଦୀ ଏହାକୁ ଚାରି ଭାଗରେ ବିଭକ୍ତ କରିଛନ୍ତି - ୧। ନିର୍ଗୁଣ ପ୍ରଧାନ ଓ ଧାର୍ମିକ ଉପଦେଶ ମୂଳକ ଦୋହା, ।୨। ଶୃଙ୍ଗାର ପରତ ଦୋହା, ।୩। ନୀତିବିଷୟକ ଦୋହା, ।୪। ବୀରରସ ପ୍ରଖ୍ୟାପକ ଦୋହା । ଏହି ଚାରି ପ୍ରକାର ଦୋହା ମଧ୍ୟରୁ ପ୍ରଥମ ପ୍ରକାରର ଦୋହା ବୌଦ୍ଧ କବି, ଜୈନମୁନୀ ଓ ସନ୍ଥ କବିଙ୍କ ଦ୍ୱାରା ବ୍ୟବହୃତ ହେଉଥିଲା । ଏଥିରେ ଏଗାର ମାତ୍ରା ଥିଲା । ଦୋହା ଛନ୍ଦରେ ଏହି ଏକପ୍ରକାର ନିୟମ ପ୍ରଯୁକ୍ତ ହେଉ ନ ଥିଲେ ହେଁ, ଓଡ଼ିଆରେ ଏହି ଏଗାର ମାତ୍ରାରୁ ଏଗାର ଅକ୍ଷରିଆ ଛନ୍ଦର ସୃଷ୍ଟି ହେଲା । ଅଚ୍ୟୁତଙ୍କ **ଚାରିଖାଜି**,ଯଶୋବନ୍ତଙ୍କ **ଆତ୍ମ ପରଚେ ଗୀତା** ଓ ବଳରାମ ଦାସଙ୍କ **ଶ୍ରୀମଦ୍ ଭଗବଦ୍‌ଗୀତା** ଓ **ଉଦ୍ଧବ ଗୀତା**ର କେତେକ ଅଧ୍ୟାୟ ଓ ଅନ୍ୟାନ୍ୟ ଅନେକ ପ୍ରାଚୀନ ଗ୍ରନ୍ଥ ଏହି ଛନ୍ଦରେ ରଚିତ । ଏହା ଥିଲା ଷୋଡ଼ଶ ଶତାବ୍ଦୀର ଏକ ଲୋକପ୍ରିୟ ବିଶିଷ୍ଟ ଛନ୍ଦ । ଆଚାର୍ଯ୍ୟ ହଜାରୀ ପ୍ରସାଦ ଦ୍ୱିବେଦୀଙ୍କ ମତରେ ଗାଥା ପ୍ରାକୃତ ଭାଷାର ପ୍ରକୃତି ଅନୁଯାୟୀ ଦୀର୍ଘାନ୍ତ ଛନ୍ଦରେ ଲେଖା ଯାଉଥିବା ବେଳେ ଅପଭ୍ରଂଶ ଭାଷାର ପ୍ରକୃତି ଅନୁଯାୟୀ 'ଦୋହା' ହ୍ରସ୍ୱାନ୍ତ ଛନ୍ଦରେ ଲେଖାଗଲା । ଯତିପାତ ହିଁ ଏହି ଛନ୍ଦର ନୂତନତା । ସଂସ୍କୃତ ଓ ପ୍ରାକୃତରେ ଯତିପାତ ନ ଥିଲା । ଦୋହା ଛନ୍ଦରେ ଏହାର ଆରମ୍ଭ ହୋଇ ପରବର୍ତ୍ତୀ ଯୁଗରେ ବ୍ୟବହୃତ ପ୍ରତ୍ୟେକ ଛନ୍ଦରେ ଉଲ୍ଲିଖିତ ରାଗ, ରାଗିଣୀ ଓଡ଼ିଆରେ ପ୍ରଯୁକ୍ତ ହୋଇଥିଲେ ହେଁ, ଯତିପାତ ହେଲା ଏହାର ନୂଆ ନିୟମ । ଆଚାର୍ଯ୍ୟ ମହାଶୟଙ୍କ ମତରେ ଏହି ଯତିପାତ ଇରାନ ଓ ଫାର୍ଶି ସାହିତ୍ୟର ପ୍ରଭାବ । ତାଙ୍କ ମତରେ ଇରାନରେ ମୁସଲିମ୍ ଧର୍ମ ପ୍ରଚାରିତ ହେବା ପୂର୍ବରୁ ମଧ୍ୟ 'ଯତିପାତ'ର ନିୟମ ପ୍ରଚଳିତ ଥିଲା । ଫାର୍ଶି ଗଦ୍ୟରେ ମଧ୍ୟ ଯତିପାତ ରହୁଥିଲା । ଏ ଦେଶକୁ ମୁସଲମାନଙ୍କ ଆଗମନ ପରେ କେବଳ ପଦ୍ୟ ନୁହେଁ, ଗଦ୍ୟରେ ମଧ୍ୟ ଯତିପାତର ନିୟମ ପ୍ରବର୍ତ୍ତିତ ହୋଇ ସମସ୍ତ ଭାରତୀୟ ସାହିତ୍ୟକୁ ପ୍ରଭାବିତ କଲା । ବିଦ୍ୟାପତିଙ୍କ **କୀର୍ତ୍ତିଲତା** ଓ ନାରାୟଣ ଦାସଙ୍କ **ରୁଦ୍ର ସୁଧାନିଧି**ର ଗଦ୍ୟକୁ ଏହାର ଉଦାହରଣ ରୁପେ ଉପସ୍ଥାପିତ କରାଯାଇ ପାରେ ।

ଦୋହା ପରି **ସାକ୍ଷୀ** ଓ ଶବଦ କଥା ମଧ୍ୟ ଆଲୋଚନା କରାଯାଇପାରେ । ଓଡ଼ିଆ କବିମାନେ 'ସାକ୍ଷୀ'ର ବାରମ୍ବାର ଉଲ୍ଲେଖ କରୁଥିଲେ ହେଁ, କୌଣସି ଓଡ଼ିଆ କବି '**ସାକ୍ଷୀ**' ଲେଖିଥିବା ଜଣାଯାଏ ନାହିଁ । କିନ୍ତୁ ଅଚ୍ୟୁତ ଓ ଯଶୋବନ୍ତଙ୍କ ନାଁରେ 'ଶବଦ' ମିଳେ ।

ଦୋହା, ଶବଦ, **ସାକ୍ଷୀ** ଓ ଯତିପାତ ନିୟମ ପରି 'ଚଉତିଶା' ରଚନାର ମୂଳ ଅପଭ୍ରଂଶ ଭାଷାରୁ କେହି କେହି ସନ୍ଧାନ କରିଥାନ୍ତି । ଏହା ଓଡ଼ିଆ ସାହିତ୍ୟରେ ଅତ୍ୟନ୍ତ

ଲୋକପ୍ରିୟ ହୋଇଥିଲେ ହେଁ, ହିନ୍ଦୀ, ବଙ୍ଗଳା ଓ ଅହମୀୟା ଭାଷାରେ ମଧ୍ୟ ଏହି ନିୟମରେ ରଚିତ ବହୁ କବିତା ଦେଖିବାକୁ ମିଳେ । ମହମ୍ମଦ ବାୟସୀଙ୍କ **ଅଖରାବଟ** ଏହାର ଏକ ଦୃଷ୍ଟାନ୍ତ। କାହାରି କାହାରି ମତରେ ଏହି ପ୍ରକାର ରଚନା ପ୍ରଣାଳୀ ମଧ୍ୟ ଆସିଥିଲା ସୁଫୀ ସନ୍ଥଙ୍କ ସାହିତ୍ୟରୁ ।

## ୩ । ଧାର୍ମିକ ଦୋହା

ଅପଭ୍ରଂଶ ସାହିତ୍ୟର ସବୁଠାରୁ ବଡ଼ ପ୍ରଭାବ ଆସେ ନାଥ ସିଦ୍ଧଙ୍କ ରଚିତ ଧାର୍ମିକ ଦୋହାବଳୀରୁ । ମହାମହୋପାଧ୍ୟାୟ ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀ ଅନେକ ବୌଦ୍ଧ ସିଦ୍ଧଙ୍କ ଦୋହା ନେପାଳରୁ ଆବିଷ୍କାର କରି ପ୍ରକାଶ କଲା ପରେ ପୂର୍ବାଞ୍ଚଳୀୟ ଅପଭ୍ରଂଶ ସାହିତ୍ୟର ଅଧ୍ୟୟନରେ ଏକ ନୂଆ ଅଧ୍ୟାୟର ସୂତ୍ରପାତ ହୁଏ । ସେ ଏହି ଦୋହାର ଭାଷାକୁ ଏକ ହଜାର ବର୍ଷ ତଳର ପ୍ରାଚୀନ ବଙ୍ଗଳା କହି ପ୍ରକାଶ କଲେ । ଏହି ଦୋହା ସବୁ ପ୍ରକାଶିତ ହେବା ପରେ ମିଥିଳା, ଆସାମ, ବିହାର, ଓଡ଼ିଶା ଓ ବଙ୍ଗଳାର ଆଲୋଚକମାନେ ଏହାର ଭାଷାକୁ ପରୀକ୍ଷା କରି ଏଥିରେ ପୂର୍ବାଞ୍ଚଳରେ ପ୍ରଚଳିତ ବିଭିନ୍ନ ଆଧୁନିକ ଭାରତୀୟ ଭାଷାର ଆଦିରୂପ ଆବିଷ୍କାର କରିଥିଲେ ।

ସିଦ୍ଧମାନେ ସହଜ ତଥା ବାମମାର୍ଗୀ ଥିଲେ । ସେମାନେ ନିଜକୁ ରହସ୍ୟବାଦୀ ରୂପେ ପ୍ରଚାର କରୁଥିଲେ ହେଁ ସାଧନାର ପ୍ରକୃଷ୍ଟ ମାର୍ଗ ରୂପେ ନୀଚ-ଜାତୀୟା ଯୋଗିନୀମାନଙ୍କୁ ଗ୍ରହଣ କରୁଥିଲେ । ସେମାନେ ମୁଖ୍ୟତଃ ବଙ୍ଗ, ବିହାର ଓ ଓଡ଼ିଶାର ଅଧିବାସୀ ଥିଲେ । ଜାତିଭେଦରେ ବିଶ୍ୱାସ କରୁ ନ ଥିବାରୁ ବ୍ରାହ୍ମଣ,ଶୂଦ୍ର, କ୍ଷତ୍ରୀୟ ଓ ବୈଶ୍ୟ ପ୍ରଭୃତି ଚାରି ଜାତିର ଲୋକେ ଏହି ପନ୍ଥାରେ ଏକତ୍ର ହୋଇ ପାରିଥିଲେ । ତେବେ ଏଥିରେ ଶୂଦ୍ର ଜାତୀୟ ଲୋକମାନଙ୍କର ପ୍ରାଧାନ୍ୟ ଥିଲା । ସଂଖ୍ୟାରେ ମଧ୍ୟ ସେମାନେ ଅଧିକ ଥିଲେ । ସଂଗୃହୀତ ଦୋହା ସବୁରୁ ଚମାର, ଧୋବା, କମାର, ଡମ, ଦରଜୀ, ମତ୍ସ୍ୟଜୀବୀ, ଶବର ପ୍ରଭୃତି ଜାତିର ଉଲ୍ଲେଖ ମିଳେ । ବୋଧହୁଏ ଏହିସବୁ ଜାତିର ଲୋକେ ସିଦ୍ଧପନ୍ଥାରେ ବିଶେଷ ଭାବେ ପ୍ରବେଶ କରିଥିଲେ । ତେବେ ବି ସମାଜରେ ଏମାନଙ୍କର ପ୍ରତିପତ୍ତି ଥିଲା । ସେଥିପାଇଁ ବହୁ ରାଜା ଏପରିକି ରାଜକୁମାରୀମାନେ ଏଥିରେ ଦୀକ୍ଷା ନେଇଥିଲେ । ନାରୀମାନଙ୍କ ମଧ୍ୟରୁ ମେଖଳା, ମଣିଭଦ୍ରା, ଲକ୍ଷ୍ମୀକରା ପ୍ରଭୃତି ସିଦ୍ଧମାନଙ୍କ ମଧ୍ୟରେ ପରିଗଣିତ ।

ସିଦ୍ଧ ସାହିତ୍ୟରେ ସାଧାରଣତଃ ୮୪ ସିଦ୍ଧଙ୍କର ପରିଗଣନା ହେଉଥିଲେ ହେଁ, ଦୋହା ରଚନା କରିବା ଦୃଷ୍ଟିରୁ ଅଳ୍ପ କେତେଜଣ ପ୍ରସିଦ୍ଧି ଲାଭ କରିଥିଲେ । ରଚୟିତା ଭାବେ ସମ୍ମାନିତ ହେଉଥିବା ସିଦ୍ଧମାନଙ୍କ ମଧ୍ୟରୁ କେତେକ ହେଲେ -

୧। ସରହ ପା ।

୨।      ଶବର ପା।

୩।      ଭୁସୁକୁ ପା।

୪।      ଲୁଇ ପା।

୫।      ବିରୂ ପା।

୬।      ଡୋମ୍ବି ପା।

୭।      ଦାରିକ ପା।

୮।      ଗୁଣ୍ଡରୀ ପା।

୯।      କୁକ୍କୁରୀ ପା।

୧୦।     କମରିପା।

୧୧।     କାହ୍ନୁ ପା।

୧୨।     ଗୋରକ୍ଷ ପା।

୧୩।     ତିଲୋ ପା।

୧୪।     ଶାନ୍ତି ପା। ପ୍ରଭୃତି।

ବୌଦ୍ଧ ଧର୍ମର ବଜ୍ରଯାନ ପନ୍ଥାକୁ ଏହି ସିଦ୍ଧମାନେ ଅବଲମ୍ବନ କରିଥିଲେ ହେଁ, ଏମାନଙ୍କ ସାଧନ ପ୍ରଣାଳୀରେ ବହୁ ପାର୍ଥକ୍ୟ ପରିଦୃଷ୍ଟ ହୁଏ। ଏମାନଙ୍କ ରଚନାରେ ମୁଖ୍ୟତଃ ନୈରାତ୍ମ୍ ଭାବନା, କାୟାଯୋଗ, ସହଜ ଶୂନ୍ୟର ସାଧନା ଓ ଭିନ୍ନ ଭିନ୍ନ ସମାଧିରୁ ଉଦ୍ଭୂତ ଅବସ୍ଥାର ବର୍ଣ୍ଣନା ଦେଖିବାକୁ ମିଳେ। ସେମାନଙ୍କ ରଚନାର ମୂଳ ସ୍ୱର ଥିଲା ସହଜ ସାଧନା ବା ଜୀବନକୁ ସ୍ୱାଭାବିକଭାବେ ଭୋଗ କରିବାର ପ୍ରବୃତ୍ତି। ଏମାନଙ୍କ ସାଧନା-ପଦ୍ଧତି ନିମ୍ନ କ୍ରମରେ ବିକଶିତ ହୋଇ 'ମହାସୁଖ' ପ୍ରାପ୍ତି ରେ ଉପନୀତ ହେଉଥିଲା।



ଏମାନଙ୍କ ରଚନାକୁ ଅନୁଶୀଳନ କଲେ ଏଥିରେ ନିମ୍ନ କେତେକ ପ୍ରବୃତ୍ତି ମୁଖ୍ୟ ଭାବରେ ଦେଖିବାକୁ ମିଳେ ।

୧। ପ୍ରତ୍ୟେକ ସିଦ୍ଧ ତାନ୍ତ୍ରିକ ବୌଦ୍ଧ ଥିଲେ ।

୨। ଭାରତରେ ପ୍ରଚଳିତ ବିଭିନ୍ନ ଧର୍ମ ପରଂପରାକୁ ନିନ୍ଦା କରି ନିଜ ଆଚରିତ ସିଦ୍ଧାନ୍ତ ପଦ୍ଧତିକୁ ଶ୍ରେଷ୍ଠ ଭାବେ ପ୍ରତିପାଦିତ କରିବା ଏମାନଙ୍କର ମୂଳ ଲକ୍ଷ୍ୟ ଥିଲା ।

୩। ଏମାନେ ଯେ କେବଳ ହିନ୍ଦୁମାନଙ୍କୁ ନିନ୍ଦା କରୁଥିଲେ, ତାହା ନୁହେଁ, ଅତାନ୍ତ୍ରିକ ବୌଦ୍ଧମାନଙ୍କୁ ମଧ ଘୃଣା ଚକ୍ଷୁରେ ଦେଖୁଥିଲେ ।

୪। ଏମାନେ ସହଜ ସାଧନାର ପ୍ରଚାରକ ଥିଲେ ।

୫। ବେତାଳ, ବଜ୍ର, ଧାତୁଭେଦ, ରସାୟନ ଏବଂ ଯୋଗିନୀର ସହାୟତା ମାଧମରେ ସାଧନାର ସିଦ୍ଧିରେ ବିଶ୍ୱାସ କରୁଥିଲେ ।

ଭାରତର ଅନ୍ୟାନ୍ୟ ଅଞ୍ଚଳ ପରି ଓଡ଼ିଶାରେ ମଧ୍ୟ ଏମାନଙ୍କର ପ୍ରସିଦ୍ଧି ବୃଦ୍ଧି ପାଇଥିଲା । ଲୋକେ ଏମାନଙ୍କୁ ପୁରାଣପ୍ରସିଦ୍ଧ ଋଷିମାନଙ୍କ ପରି ଶ୍ରଦ୍ଧା ଓ ସମ୍ମାନ ଦେଉଥିଲେ । **ଲୋହି ଗୀତା**ରୁ ଏହିପରି ଏକ ତାଲିକା ମିଳିଥାଏ ।

ମାଣ୍ଡବ ଗଉତମ ଆଦି ମୀନ
ମାହିନ୍ଦ୍ର ଗୋରେକ୍ଷେ ଗଉତମ ଜାଣ
ଶାୟନ୍ତନୁକ ସେ ଅନ୍ତ ତନ୍ତିପା
ଏ ଷୋଳ ସିଦ୍ଧ ସ୍ୱରୂପେ ଦାୟକା
କାହ୍ନପା ହାଡ଼ିପା ବିରୂପା ଲୋଇ
ସର୍ବ ଋଷି ବଶିଷ୍ଠ ଜାବାଳି କହି ।

ଲୋହି ଦାସଙ୍କ ପରି **ଚୈତନ୍ୟ ଭାଗବତ**ର ଲେଖକ ଈଶ୍ୱର ଦାସ ମଧ୍ୟ ଜାବାଳି ଓ ସାୟନ୍ତନୁଙ୍କ ପରି ଋଷିଙ୍କ ସହ ହାଡ଼ିପା, ତନ୍ତିପା ଓ କାହ୍ନପାଙ୍କର ଗଣନା କରିଛନ୍ତି ।

ହାଡ଼ପା ଚନ୍ତିପା କାହ୍ନପା
ଜାବାଳି ସାୟନ୍ତନୁ ଆପା ।

ଏହି ସିଦ୍ଧମାନେ କେବଳ ସାଧନାରେ ପ୍ରସିଦ୍ଧିଲାଭ କରି ନ ଥିଲେ, ଏମାନଙ୍କ ବ୍ୟବହୃତ ଭାଷା ଆଧୁନିକ ଭାରତୀୟ ଭାଷାର ବିକାଶ ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା । ସେତେବେଳର ପ୍ରଚଳିତ ଭାଷା ଥିଲା ଏମାନଙ୍କ ଧର୍ମ-ପ୍ରଚାରର ମାଧ୍ୟମ । ଶୌରସେନୀ ଅପଭ୍ରଂଶର ଏହା ଥିଲା ମାର୍ଜିତ ରୂପ । **ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ**ରେ ଯେଉଁ ଚବିଶ ଜଣ ଧର୍ମଗୁରୁଙ୍କର ଦୋହା ସବୁ

ସଂଗୃହୀତ ହୋଇ ପ୍ରକାଶ ପାଇଲା, ସେଥିରୁ କାହ୍ନପାଙ୍କର ୧୩, ଭୁସୁକୁଙ୍କର ୮, ଶରହଙ୍କର ୪, କୁକ୍କୁରୀପାଙ୍କର ୨, ଶାନ୍ତିପାଙ୍କର ୨, ଲୁଇପାଙ୍କର ୨, ବିରୂପାଙ୍କର ୧, ଗୁଣ୍ଡରୀପାଙ୍କର ୧, ଚାଟିଲ ବା ଧାମପାଙ୍କର ୧, କମ୍ବଳପାଙ୍କର ୧, ଡୋମ୍ବୀପାଙ୍କର ୧, ମହୀପାଙ୍କର ୧, ବୀଣାପାଙ୍କର ୧, ଆର୍ଯ୍ୟଦେବପାଙ୍କର ୨, ଢେଣ୍ଢଣପାଙ୍କର ୧, ଦାରୀକପାଙ୍କର ୨, ଭାଦେପାଙ୍କର ୧, ତାଡ଼କପାଙ୍କର ୧, କଙ୍କଣପାଙ୍କର ୧, ଜୟନନ୍ଦୀଙ୍କର ୧ଟି କବିତା ଦେଖିବାକୁ ମିଳେ । ଏଥିରେ ସର୍ବାଧିକ ଦୋହା କାହ୍ନପାଙ୍କର । ଭୁସୁକୁ, ଲୁଇ, ବିରୂପା ଓ କମ୍ବଳ ପାଙ୍କର ଦୋହାକୁ ହିସାବକୁ ନେଲେ, ଏଥିରେ ସଂଗୃହୀତ ଅଧିକାଂଶ ପଦ ଓଡ଼ିଶାବାସୀଙ୍କର ଥିବା ଜଣାଯାଏ । ତେଣୁ ଓଡ଼ିଆ ଭାଷାର ଆଦିରୂପ ଭାବେ ଏହି ଦୋହାର ଭାଷାକୁ ଗ୍ରହଣ କରାଯାଇଥାଏ ।

କେବଳ ଭାଷା ନୁହେଁ, ଏହି ଦୋହା ସବୁରେ ବ୍ୟବହୃତ ଲିପିରୁ ଏ, କ, ଘ, ଚ, ଜ, ତ, ନ, ପ, ବ, ର, ଲ ଓ ଅନ୍ୟାନ୍ୟ ଅନେକ ଅକ୍ଷର, ପୁଣି ସଂଖ୍ୟା ଭିତରୁ ୬, ୭, ୮, ୯, ଆଧୁନିକ ଓଡ଼ିଆ ଲିଖନ ପ୍ରଣାଳୀ ସହ ସମାନତା  ରକ୍ଷା କରିଥାଏ ।

କେବଳ ଜନ୍ମସ୍ଥାନ ଓ ଲିପି ନୁହେଁ, ଭାଷା ଦୃଷ୍ଟିରୁ ମଧ୍ୟ ଏହା ଓଡ଼ିଆ ଭାଷାର ଅତି ନିକଟବର୍ତ୍ତୀ । ଲୁଇପାଙ୍କର ପ୍ରସିଦ୍ଧ ଦୋହା 'କାଆ ତରୁବର ପଞ୍ଚବିଡାଳ' ଶୀର୍ଷକ କବିତାକୁ ସିଦ୍ଧମାନଙ୍କ ଭାଷାରେ ନିମ୍ନରେ ଉଦ୍ଧାର କରାଯାଉଛି ।

କାଆ ତରୁବର ପଞ୍ଚ ବି ଡାଲ
ଚଞ୍ଚଲ ଚିଏ ପଇଠେ କାଳ ।
ଦିଢ଼ କରିଅ ମହାସୁହ ପରିମାଣ
ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ ।
ସଅଳ ସମାହିଅ କାହି କରିଅଇ
ସୁଖ ଦୁଖେତେ ନିଚିତ ମରିଅଇ
ଏହି ଏଉ ଛାନ୍ଦକ ବାନ୍ଧ କରଣ କପାଟେର ଆସ
ସୁନୁପାଖ ଭିତି ଲେହୁରେ ପାସ ।
ଭଣଇ ଲୁଇ ଆସହେ ଝାଣେ ଦିଠା
ଧମଣ ଚମଣ  ବେଣି ପିଣ୍ଡି ବଇଠା ।

ଅର୍ଥ - ଶରୀର ଏକ ବୃକ୍ଷ ଏବଂ ଏଥିରେ ପାଞ୍ଚୋଟି (ପଞ୍ଚ ଇନ୍ଦ୍ରିୟ) ଡାଳ ଅଛି । ଚଞ୍ଚଳ ଚିତ୍ତରେ କାଳ ପ୍ରବେଶ କରେ । (ତେଣୁ ଚିତ୍ତକୁ) ଦୃଢ଼ କରି ମହାସୁଖକୁ ଅନୁଭବ କର । ଲୁଇ କହୁଛନ୍ତି ଗୁରୁଙ୍କୁ ପଚାରି (ଏହାର ତତ୍ତ୍ୱ ) ଜାଣ । ସକଳ ସମାଧି କାହିଁକି କରିବ,

ସୁଖ ଦୁଃଖରେ ମରିବା ନିଶ୍ଚିତ । ତେଣୁ ଏହି ବାହ୍ୟାଚାର ବା ଅଙ୍ଗର ବେଶଭୂଷାକୁ ପରିତ୍ୟାଗ କରି ଶୂନ୍ୟପଥର ପଛାକୁ ପାଖକୁ ନିଅ । ଲୁଇ କହୁଛନ୍ତି, ମୁଁ ଧ୍ୟାନରେ ଦେଖୁଛି ଯେ ଉଭୟ (ବେଣି) ଧମଣ ଚମଣ ପିଣ୍ଡରେ ବସିଛନ୍ତି ।

ଉଦ୍ଧୃତ ଚର୍ଯ୍ୟାପଦରେ, କାଆ, ଡାଳ, ଚଞ୍ଚଳ, ଚିଏ, ପଇଠ, ଦିଢ଼, କରିଅ, ଭଣଇ, ପୁଚ୍ଛି, ଜାଣ, କାହି, କରିଅଇ, ନିଚିତ, ଏହି, ବାନ୍ଧ, ସୁନୁ, ଆମ୍ହେ, ବେଣି, ବଇଠା ପ୍ରଭୃତି ଶବ୍ଦ ଓଡ଼ିଆରେ ଅପରିବର୍ତ୍ତିତ ଭାବେ ବା ଅଳ୍ପ ପରିବର୍ତ୍ତିତ ହୋଇ ବ୍ୟବହୃତ ହୋଇଛି ।

କେବଳ ଶବ୍ଦ ସମ୍ଭାର ନୁହେଁ, କାରକ ବା ବିଭକ୍ତିର ଚିହ୍ନ, କ୍ରିୟାରୂପ, ସର୍ବନାମ ଓ ଅବ୍ୟୟ ଦୃଷ୍ଟିରୁ ଏହା ଓଡ଼ିଆ ଭଷାର ଅତ୍ୟନ୍ତ ସମୀପବର୍ତ୍ତୀ । ଭାଷାତତ୍ତ୍ୱ ଦୃଷ୍ଟିରୁ ଏଥିରେ ଯେଉଁସବୁ ଲକ୍ଷଣର ଅଙ୍କୁରୋଦ୍‌ଗମ ହୋଇଥିଲା, ତାହା ପରବର୍ତ୍ତୀ ଓଡ଼ିଆ ଭାଷାରେ ସମ୍ପୂର୍ଣ୍ଣଭାବେ ବିକଶିତ ହୋଇ ପ୍ରକାଶ ପାଇଛି । ଉଦାହରଣ ପାଇଁ ନିମ୍ନରେ ପ୍ରତ୍ୟେକ ବିଭାଗରୁ କେତେକ ଉଦାହରଣ ପ୍ରଦତ୍ତ ହେଲା ।

## (କ) କାରକ ଓ ବିଭକ୍ତି

| | |
|---|---|
| କର୍ତ୍ତାକାରକ ଓ ପ୍ରଥମା ବିଭକ୍ତି | ବହୁ ବଚନରେ 'ଏ' |
| କର୍ମକାରକ ଓ ଦ୍ୱିତୀୟା ବିଭକ୍ତିର | 'କୁ', 'ନ୍ତ', 'ଏଁ', 'ରେଁ' । |
| କରଣ କାରକରେ | 'ଏଁ' |
| ସଂପ୍ରଦାନ କାରକରେ | 'ସତକ', 'କୁ', 'ରେ' |
| ଅପାଦାନ କାରକରେ | 'ହୁଁ' ଓ 'ରୁ' |
| ଷଷ୍ଠୀ ବିଭକ୍ତିରେ | 'ର' ,'ରି' ,'ହି' ,'କ', 'ଏବଂ' |
| ସପ୍ତମୀ ବିଭକ୍ତିରେ | 'ଏ' |

## (ଖ) ସର୍ବନାମ

| ଉତ୍ତମ ପୁରୁଷ | ମଧ୍ୟମ ପୁରୁଷ |
|---|---|
| ଅହ୍ମେ' | ତୁମ୍ହେ |
| ଆମ୍ଭେ | ତୁମ୍ଭେ |
| ମଇ | ତୁ |
| ମଏ | ତୋହୋରେ |

| | |
|---|---|
| ମୁକୁ | ତୋର |
| ମୋହର, ମୋ, ମୋର, ମୋରି | ତୋ |
| | ତୋଏ, |
| | ତୋ, ତୋହୋର, ତୋହରି |

ସେହିପରି ସୋ, ସେ, ତା, ତହ୍ନୁ, ତାହେର, ତହି, ତେ, ଜ, ଜୋ, ଜେ, ଜା, ଜାହେର, ଜହି, କେ, କେହୋ, କୋଇ, କୋଏ, କାହେରେ, କାହରି, କାହେରି, କାହି, କାହିଁ, କାସୁ ।

## (ଗ) କ୍ରିୟା :

ଇ - ଭଣଇ, ବାଜଇ, ବୁଝଇ, ବସଇ, କାନ୍ଦଇ, ଜାଣଇ ।

ସି- ଯାସି, ବୁଝସି, ଅଚ୍ଛସି ।

ମି- ମାରମି, ମାରିମି, ପବମି,

ଅନୁଜ୍ଞା- ମାର, କର, ବାହ ।

ଅତୀତ କାଳ - ଅଇଲା, ଗଡ଼ିଲା, ଫୁଟିଲା, ବୁଡ଼ିଲି, ମେଲିଲି ।

ଭବିଷ୍ୟତ କାଳ - ଯିବି, କରିବ, ଖାଇବ ।

ଅସମାପିକା - ଶୁଣି, ଜାଣି, ବଖାଣି, ଦେଖି, ଚାହିଁ, ମାରି, ମିଳି, ଚାପି ।

ନ୍ତ ପ୍ରତ୍ୟୟ - ବୁଡ଼ନ୍ତେ, ପଡ଼ନ୍ତେ, ଚାହଁନ୍ତେ ।

ଅବ୍ୟୟ - କି, ତ, ଆଲୋ, ବି, ମ ।

ସଂଖ୍ୟା ବାଚକ ଶବ୍ଦ - ଦୁଇ, ବେନି, ତିନି, ଚଉଷଠି ।

ଉପରେ ପ୍ରଦତ୍ତ ଉଦାହରଣ ସବୁରୁ ଚର୍ଯ୍ୟାପଦର ଭାଷା ଆଧୁନିକ ଓଡ଼ିଆ ଭାଷାର ଯେ ପୂର୍ବରୂପ ଏହା ହିଁ ପ୍ରତିପାଦିତ ହୋଇଥାଏ ।

ସିଦ୍ଧମାନଙ୍କର ଭାଷାକୁ ସନ୍ଧ୍ୟା ଭାଷା କୁହାଯାଏ । ଏହାକୁ ଚାରୋଟି ଅର୍ଥରେ ଗ୍ରହଣ କରାଯାଇଛି -

୧। ଦିନ ଓ ରାତିର ସନ୍ଧି ସ୍ଥଳକୁ ସନ୍ଧ୍ୟା କୁହାଯିବା ପରି ସ୍ପଷ୍ଟତା ଓ ଅସ୍ପଷ୍ଟତାର ମଧ୍ୟବର୍ତ୍ତୀ ଭାଷାକୁ ସନ୍ଧ୍ୟାଭାଷା କୁହାଯାଏ । ସନ୍ଧ୍ୟା କାଳର ଅନ୍ଧକାରକୁ ଆଲୋକିତ କରିବା

ପାଇଁ ପ୍ରଦୀପର ଆବଶ୍ୟକ ହେବା ପରି ସନ୍ଧ୍ୟା ଭାଷାର ଭାବ ଜ୍ଞାନାଲୋକ ଦ୍ୱାରା ସ୍ପଷ୍ଟ ହୁଏ ।

୨। କେହି କେହି ସନ୍ଧି ସ୍ଥଳର ଭାଷାକୁ ସନ୍ଧ୍ୟାଭାଷା କହିଛନ୍ତି । ସନ୍ଧିସ୍ଥଳର ଅର୍ଥ ହେଉଛି, ବିହାର ଓ ବଙ୍ଗଳା ବା ବଙ୍ଗଳା ଓ ଓଡ଼ିଶା ବା ବିହାର ଓ ଓଡ଼ିଶାର ମଧ୍ୟବର୍ତ୍ତୀ ଅଞ୍ଚଳର ଭାଷା ।

୩। ଯେଉଁ ଭାଷାରେ ଅଭିସନ୍ଧି, ରହସ୍ୟ ବା ଅଭିପ୍ରାୟ ପ୍ରକାଶ ପାଏ ତାକୁ ସନ୍ଧ୍ୟାଭାଷା କୁହାଯାଏ । ବଜ୍ରଯାନୀ ସିଦ୍ଧମାନେ ନିଜ ପ୍ରତିପାଦିତ ସିଦ୍ଧାନ୍ତକୁ ସ୍ପଷ୍ଟ କରିବା ପାଇଁ ଏହି ଭାଷାର ବ୍ୟବହାର କରିଥାନ୍ତି ।

୪। ଅପଭ୍ରଂଶ ଭାଷାର ସନ୍ଧ୍ୟାକାଳ ବା ଶେଷ ସମୟରେ ଲେଖା ଯାଇଥିବାରୁ ଏହାକୁ ସନ୍ଧ୍ୟା ଭାଷା କୁହାଯାଇଛି ।

ସିଦ୍ଧ-ସଂପ୍ରଦାୟର ପରବର୍ତ୍ତୀ ବିକାଶ ହେଉଛି, ନାଥ-ସଂପ୍ରଦାୟ । ଏଥିରେ ସିଦ୍ଧମାନଙ୍କର ସହଜ ଯୋଗ ପରିବର୍ତ୍ତେ ଅଷ୍ଟାଙ୍ଗ ଯୋଗ ଓ ରସାୟନ ସାହାଯ୍ୟରେ କାୟାକୁ ଅମର କରିବାର ଭାବନା ପ୍ରଚଳିତ । ୮୪ ସିଦ୍ଧଙ୍କ ପରି ଏଥିରେ ନବ ନାଥ ପ୍ରଧାନ । ସେମାନେ ହେଉଛନ୍ତି -

୧। ଆଦିନାଥ
୨। ମତ୍ସେନ୍ଦ୍ରନାଥ
୩। ଗୋରଖନାଥ
୪। ଗାହିଣୀନାଥ
୫। ଚର୍ପଟନାଥ
୬। ଚୌରଙ୍ଗୀନାଥ
୭। ଜ୍ୱାଲେନ୍ଦ୍ରନାଥ
୮। ଭର୍ତ୍ତନାଥ
୯। ଗୋପୀଚନ୍ଦନାଥ ।

ଓଡ଼ିଆ ସାହିତ୍ୟର ବିଭିନ୍ନ ଗ୍ରନ୍ଥରେ ନାଥ-ସିଦ୍ଧମାନଙ୍କର ଉଲ୍ଲେଖ କରାଯାଇଛି । **ଶିଶୁବେଦ, ଅମରକୋଷ, ସାରଳା ମହାଭାରତ, ରୁଦ୍ର ସୁଧାନିଧି, ସପ୍ତାଙ୍ଗ ଯୋଗଧାରଣ, ଗୋବିନ୍ଦଚନ୍ଦ୍ର ଗୀତା, ଗୋରେଖ ସଂହିତା, ଅଷ୍ଟାଙ୍ଗ ଯୋଗ ଧାରଣା, ଟୀକା ଗୋବିନ୍ଦଚନ୍ଦ୍ର** ଓ **ଅନ୍ୟାନ୍ୟ** ବହୁ କ୍ଷୁଦ୍ର ରଚନାରେ ପ୍ରସିଦ୍ଧ ନାଥମାନଙ୍କର ବନ୍ଦନା, କୀର୍ତ୍ତି ଓ କାହାଣୀ ଦେଖିବାକୁ ମିଳେ । ମଛେନ୍ଦ୍ର ନାଥ ଓ ଗୋରେଖ ନାଥଙ୍କ କଥୋପକଥନ ଛଳରେ ବହୁ ଗ୍ରନ୍ଥ ଲିଖିତ । ସେଥି ମଧ୍ୟରୁ ନିମ୍ନରେ ଏକ କ୍ଷୁଦ୍ର ରଚନା ସନ୍ନିବେଶିତ ହେଲା -

**ଗୋରେଖ ଉବାଚ -**

କେ ମୋର ଧରତୀ କେ ମୋର ଆକାଶ
କେ ମୋର ମେରୁ ମନ୍ଦିର କପିଲାଶ

କାହିଁ ବାୟେ ବରୁଣ ବହେ
କାହିଁ ଚନ୍ଦ୍ର ସୂର୍ଯ୍ୟ ରହେ ।

**ମଛେନ୍ଦ୍ର ଉବାଚ -**

ଗୋଡ଼ ମୋର ଧରତି ମୁଣ୍ଡ ମୋର ଆକାଶ
ପିଠିରେ ମୋର ମେରୁ ମନ୍ଦର କପିଳାଶ
ନାସିକା ବାୟେ ବରୁଣ ବହେ
ଲଲାଟେ ଚନ୍ଦ୍ର ସୂର୍ଯ୍ୟ ରହେ ।

**ଗୋରେଖ ଉବାଚ -**

କେବଣ ନାଳ ଶକ୍ତି କେବଣ ନାଳ ଶିବ
କେବଣ ସଂଯୋଗରୁ ଉପୁଜିଲା ଜୀବ
କେ ଭକ୍ଷି ହୋଇଲା ଥିର
କହିଦେବା ଗୁରୁଦେବ ଆତ୍ମାର ଧୀର ।

ମଛେନ୍ଦ୍ର ଉବାଚ-

ମାତା ନାଳ ଶକ୍ତି ପିତା ନାଳ ଶିବ
ବେନି ସଯୋଗରୁ ଉପୁଜିଲା ଜୀବ
ବାରେଣୀ ଭକ୍ଷି ହୋଇଲାକ ଥିର
ନୋହେ ଗୋରେଖନାଥ ଆତ୍ମା ଧୀର ।

ଓଡ଼ିଆ ସାହିତ୍ୟରେ ଆଦିନାଥ ଓ ମଛେନ୍ଦ୍ର ନାଥଙ୍କର ଉଲ୍ଲେଖ ବାରମ୍ବାର ଦେଖିବାକୁ ମିଳୁଥିଲେ ହେଁ, ସେମାନଙ୍କର ଭଣିତାଥିବା କୌଣସି ଗ୍ରନ୍ଥ ଓଡ଼ିଶାରୁ ଏ ପର୍ଯ୍ୟନ୍ତ ମିଳିନାହିଁ । ସେହିପରି ଅନ୍ୟାନ୍ୟ ନାଥଙ୍କ କଥା । ଯଶୋବନ୍ତ ଦାସ, ଭରଥ ଦାସ, ବିପ୍ର ଯୋଗୀନ୍ଦ୍ର ନାଥ ପରଂପରାରୁ ଗୋବିନ୍ଦଚନ୍ଦ୍ର ଉପାଖ୍ୟାନକୁ ନେଇ ଗ୍ରନ୍ଥ ରଚନା କରି ଓଡ଼ିଶାରେ ତାଙ୍କ ପ୍ରସିଦ୍ଧି କୁ ପ୍ରଚାର କରିଛନ୍ତି । ଚଉରାଙ୍ଗୀ ଓ ମଛେନ୍ଦ୍ରନାଥଙ୍କ ଉପାଖ୍ୟାନ ଯଥାକ୍ରମେ ଅନନ୍ତ ଦାସଙ୍କ **ହେତୁ ଉଦୟ ଭାଗବତ** ଓ ଦ୍ୱାରକା ଦାସଙ୍କ **ପରଚେ ଗୀତା**ରେ ଦେଖିବାକୁ ମିଳେ । ଓଡ଼ିଶାରେ ପ୍ରଚଳିତ 'ଗୁଣି ଗାରେଡ଼ି'ରେ ମଧ୍ୟ ଆଦିନାଥ, ମଛେନ୍ଦ୍ର ନାଥ, ଗୋରେଖ ନାଥ ଚୁରଙ୍ଗିଙ୍କ ଆଜ୍ଞା ରହିଛି । ନାଥ ଭାବରେ ଏମାନେ ପ୍ରସିଦ୍ଧି ଲାଭ କରିଥିଲେ ହେଁ ଲେଖକ ଭାବରେ କେବଳ ଗୋରେଖନାଥ ହିଁ ପ୍ରସିଦ୍ଧ ଓ ତାଙ୍କ ବାଣୀର ପ୍ରଥମ ସଙ୍କଳନ ହେଉଛି, **ଶିଶୁବେଦ** ।

## ଶିଶୁବେଦ

ଓଡ଼ିଆ ସାହିତ୍ୟରେ **ଶିଶୁବେଦ** ହିଁ ସର୍ବ ପ୍ରାଚୀନ ରଚନା । ହିନ୍ଦୁ ଧର୍ମରେ ଚାରିବେଦକୁ ଆଦିଗ୍ରନ୍ଥ ରୂପେ ଗ୍ରହଣ କଲା ପରି ଓଡ଼ିଶାର **ଶିଶୁବେଦର** ପ୍ରସିଦ୍ଧି । ସାରଳା ଦାସ ଆୟୁର୍ବେଦ, ଜ୍ୟୋତିର୍ବେଦ, ଧନୁର୍ବେଦ ଓ ଗନ୍ଧର୍ବ ବେଦ-ଏହି ଚାରୋଟି ଉପବେଦ ସହ **ଶିଶୁବେଦର** ଗଣନା କରିଛନ୍ତି । ବେଦର ରଚୟିତା ବ୍ରହ୍ମାଙ୍କ ପରି **ଶିଶୁବେଦର** ରଚୟିତା ହେଉଛନ୍ତି ନିଜେ ଶିବ, ନାଥ ପରଂପରାର ଆଦି ନାଥ । ବହ୍ମା ଚାରି ମୁଖରେ ଚାରୋଟି ବେଦ ପାଠ କଲା ପରି ଶିବ ତାଙ୍କ ପାଞ୍ଚ ମୁଖରେ ଉପରୋକ୍ତ ପାଞ୍ଚୋଟି ବେଦ ପାଠ କରିଥାନ୍ତି ।

**ଶିଶୁବେଦର** ପ୍ରାଚୀନତା କେବଳ ସାରଳା ଦାସଙ୍କ ଦ୍ୱାରା ସମର୍ଥିତ ନୁହେଁ । ହିନ୍ଦି ସାହିତ୍ୟର ବିଶିଷ୍ଟ ଗବେଷକ ଡ଼କ୍ଟର ପୀତାମ୍ବର ଦତ୍ତ ବଡଥ୍ୱାଲ **ଗୋରଖବାନୀ** ନାମରେ ଯେଉଁ ଗ୍ରନ୍ଥ ପ୍ରକାଶ କରିଛନ୍ତି ସେଥିରେ ଶିଶୁବେଦର ନିମ୍ନୋକ୍ତ ପଦସବୁ ଅଳ୍ପ ପରିବର୍ତ୍ତିତ ହୋଇ ଦେଖିବାକୁ ମିଳିଥାଏ ।

୧। ମର ମର ପଣ୍ଡିତେ ମରଣ ଯେ ମିଠା
ଯେବଣ ମରଣକୁ ଗୋରେଖ ଦିଠା
ମରନ୍ତେ ଜୀବ ଯିବାକ ଯହିଁକି
ଜୀଉଁ ଜୀଉଁ ଜୀବ ସମ ପଁ ତହିଂକି ।

୨। ମନେ ମନେ ଥିବା ଭେଦ ନ କହିବା ପିଇବା ନିଝର ନୀର
ଶ୍ରୀଗୁରୁ ପ୍ରସନ୍ନେ ଅମୃତ ଭୁଞ୍ଜିବା ପିଇବା ଅମୃତ ଛାର ।

ଓଡ଼ିଆ ସାହିତ୍ୟରେ **ଶିଶୁବେଦର** ପ୍ରସିଦ୍ଧି ଅନନ୍ୟସାଧାରଣ । ପଞ୍ଚଦଶ ଶତାବ୍ଦୀରୁ ଉନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଶହ ଶହ ସାଧନା ମାର୍ଗୀୟ ଗ୍ରନ୍ଥରେ **ଶିଶୁବେଦର** ଉଲ୍ଲେଖ ଏହାର ପ୍ରସିଦ୍ଧି ଓ ପ୍ରାଚୀନତାକୁ ଆହୁରି ପୁଷ୍ଟ କରେ । ଆନୁମାନିକ ଅଷ୍ଟାଦଶ ଶତାବ୍ଦୀରେ ରଚିତ, ଜଗନ୍ନାଥଙ୍କ ଜୀବନୀ ସମ୍ବଳିତ **ପଦ୍ମପାଦ ସୁଧାନିଧି** ନାମକ ଗ୍ରନ୍ଥର ଲେଖକ ଶିଷ୍ୟ ଜଗନ୍ନାଥ **ଶିଶୁବେଦର** ଅଧିକାଂଶ ପଦକୁ ଏହି ଗ୍ରନ୍ଥର ଅନ୍ତର୍ଭୁକ୍ତ କରିଛନ୍ତି । ଏ ସବୁ ଦୃଷ୍ଟିରୁ ଗ୍ରନ୍ଥ ଭାବରେ **ଶିଶୁବେଦ**ରେ ପ୍ରାଚୀନତା ବହୁ କାଳରୁ ସ୍ୱୀକୃତି ଲାଭ କରିଥିବା ଜଣାଯାଏ ।

**ଶିଶୁବେଦର** ପ୍ରାଚୀନତାର ଅନ୍ୟତମ ସାକ୍ଷ୍ୟ ହେଉଛି ଏହାର ଭାଷା । ପ୍ରାଚୀନ ଶବ୍ଦ ଓ ପ୍ରୟୋଗ ଉଭୟ ଦୃଷ୍ଟିରୁ ଏହାର ପ୍ରାଚୀନତା ଲକ୍ଷ୍ୟ କରାଯାଇ ପାରେ । ଅଲଗ, ଅକଳିତ, ଅମ୍ରିତ, ଆଏ, ଆହୁଠ, ଉଦେ, ଏକଇଁ, ସଏଁ, ସତୀ, ଛୀର, ଥମ୍ଭୀଭୂତ, ବାଇ, ନିନା, ନିଚୟେ, ଠାବ, ଦିଠା, ତେ, ଦୁ, ସାଧିନ୍ତା, ଗରୁହ ଓ ଗରୁଆ ପ୍ରଭୃତି ପ୍ରାଚୀନ ଶବ୍ଦ ପରି, ବିଶେଷ୍ୟର ବହୁ ବଚନରେ 'ନ୍ତ' ପ୍ରତ୍ୟୟ (କାମନ୍ତ); ଅପ୍ରାଣୀ ବାଚକ ଶବ୍ଦର ପଞ୍ଚମୀ ବିଭକ୍ତିରେ 'ହୁଂ'

ପ୍ରତ୍ୟୟ(ନୀରହୁଂ, ତୁଲାହୁଂ, ଲାବଣୀହୁଂ); ଣିଜନ୍ତ କ୍ରିୟାର ବନ୍ତୀ ପ୍ରତ୍ୟୟ, (ଚଲାବନ୍ତି); କ୍ରିୟାରେ ଆନୁଷଙ୍ଗିକ 'କ' ପ୍ରତ୍ୟୟ (ଯିବାକ, ଶୁଖିବାକ); କେବଳ ଧାତୁ ମାତ୍ରକ କ୍ରିୟା ପଦ (ଆ, ପା, ଯା); ଓ ଷଷ୍ଠୀ ବିଭକ୍ତିରେ ଅନ୍ତେ ପ୍ରତ୍ୟୟ (ଚଳନ୍ତେ, ବରଷନ୍ତେ, ହାଣନ୍ତେ) ପ୍ରଭୃତି ପ୍ରୟୋଗ ଏହାର ପ୍ରାଚୀନତାର ଦ୍ୟୋତକ ।

**ଶିଶୁବେଦ୍**ର କେତେକ ପଦ ପରି ଓଡ଼ିଆ ଭାଷାରେ ରଚିତ ଆଉ କେତେକ ପଦ **ଗୋରକ୍ଷ ବାନୀ**ରେ ସଂଗୃହୀତ ହୋଇ ପ୍ରକାଶ ପାଇଛି । ଏଥିରେ ଓଡ଼ିଆ ଶବ୍ଦ ସହ ହିନ୍ଦୀ ଶବ୍ଦ ସବୁ ବ୍ୟବହୃତ ହୋଇଥିବାରୁ ଏହାକୁ ଓଡ଼ିଆ କହିବା ପାଇଁ ବେଳେ ବେଳେ ମନ ହୁଏ ନାହିଁ । ନିମ୍ନରେ ଗୋଟିଏ ପଦ ଉଦ୍ଧାର କରାଗଲା ।

ହସିବା ଖେଳିବା ରହିବା ରଙ୍ଗ,
କାମ କ୍ରୋଧ ନ କରିବା ସଙ୍ଗ,
ହସିବା ଖେଳିବା ଗାଇବା ଗୀତ
ଦୃଢ଼ କରି ରାଖି ଆପନାଂ ଚିତ ।

ଏହି ଉଦ୍ଧୃତାଂଶ ପରି ଗୋରଖ ନାଥଙ୍କ ନାମରେ ପ୍ରଚଳିତ ଗୋଟିଏ ଗଦ୍ୟ ରଚନା ହେଉଛି- ''ଶ୍ରୀ ଗୁରୁ ପରମାନନ୍ଦ ତିନକୋ ଦଣ୍ଡବତ ହୈ । x x x । ସ୍ୱାମୀ ତୁମେ ତୋ ସତଗୁରୁ ଅମ୍ହେ ତୋ ଶିଷ ସବ୍ଦ ଏକ ପୁଛିବା, ଦୟାକରି କହିବା, ମନି ନ କରିବା ରୋଷ ।''

ପଣ୍ଡିତ ରାମଚନ୍ଦ୍ର ଶୁକ୍ଳ ଏଥିରେ ପ୍ରଯୁକ୍ତ ହୋଇଥିବା 'ପୁଛିବା', 'କହିବା' ଓ 'କରିବା' ଶବ୍ଦ ସବୁକୁ 'ରାଜସ୍ଥାନର ଶବ୍ଦ' କହିଛନ୍ତି । ପଣ୍ଡିତ ଶୁକ୍ଳଙ୍କର ଏହି ମତକୁ ଗ୍ରହଣ ନ କରି ଡାଃ ରାମକୁମାର ବର୍ମା କୁହନ୍ତି, ''ଗୋରଖନାଥ ଅଧିକତର ପୂର୍ବ ବା ଉତ୍ତର ଦେଶର ନିବାସୀ ଥିଲେ । ତେଣୁ ସେ ସାଧାରଣତଃ ପୂର୍ବୀ ଗଦ୍ୟ ପ୍ରୟୋଗ କରିଥିବେ । ଅଥଚ ଏହି ଉଦ୍ଧୃତାଂଶ ବ୍ରଜଭାଷାରେ ରଚିତ । x x x । ଯେତେବେଳେ ବ୍ରଜ ଭାଷାରେ କବିତା ଲେଖା ଶୈଳୀ ସୃଷ୍ଟି ହୋଇ ନ ଥିଲା, ଓ ଏହାର ସାହିତ୍ୟର ମାନ୍ୟ ନ ଥିଲା, ସେତେବେଳେ ପୂର୍ବାଞ୍ଚଳର ଜଣେ ବ୍ୟକ୍ତି ନିଜ ଭାଷା ପରିତ୍ୟାଗ କରି ବ୍ରଜ-ଭାଷାର ଅପ୍ରଚଳିତ ଗଦ୍ୟରେ ନିଜ ଗ୍ରନ୍ଥ ରଚନା କରିବା ବିଶ୍ୱାସଯୋଗ୍ୟ ନୁହେଁ । ବୋଧହୁଏ ପରବର୍ତ୍ତୀ କାଳରେ ଗୋରଖ ନାଥଙ୍କ କୌଣସି ଶିଷ୍ୟ (ରାଜପୁତନାର ନିବାସୀ ?) ନିଜର ପନ୍ଥ-ପ୍ରବର୍ତ୍ତକ ଗୋରଖନାଥଙ୍କ ନାମ ଦେଇ ଏହି ଗ୍ରନ୍ଥ ରଚନା କରିଥିବ । ''

ଡାଃ ରାମକୁମାର ବର୍ମାଙ୍କ ମତକୁ ଗ୍ରହଣ କରି ଯଦି କୁହାଯାଏ ଯେ ଗୋରଖନାଥ ପୂର୍ବାଞ୍ଚଳ ନିବାସୀ ହୋଇଥିବାରୁ ପୂର୍ବାଞ୍ଚଳର ଭାଷା ବ୍ୟବହାର କରିଥିବେ, ତା'ହେଲେ ଏଥିରେ ଥିବା 'ପୁଛିବା' 'କହିବା' ପ୍ରଭୃତି ଶବ୍ଦ ରାଜସ୍ଥାନୀ ନ ହୋଇ ଓଡ଼ିଆ ହେବା ବିଶେଷ ସମ୍ଭବ ।

ଏସବୁ ପଦ ବ୍ୟତୀତ 'ଗୋରଖ ନାଥ'ଙ୍କ ଭଣିତା ଥିବା ବହୁକ୍ଷୁଦ୍ର ରଚନା ଓଡ଼ିଆରେ ଦେଖିବାକୁ ମିଳେ । **ସପତାଙ୍ଗର** ରଚୟିତା ରୂପେ ମଧ ଗୋରଖନାଥ ସମ୍ମାନିତ -

ଗୋରେଖ ନାଥ କହିଲେ ମଲ୍ଲିକା ଶୁଣିଲେ

ଗୁରୁ ଶିଷ୍ୟ ପରମ ଆତ୍ମାରେ ବିହରିଲେ ।

ଓଡ଼ିଶାରେ ଗୋରଖ ନାଥଙ୍କର ଏତେ ପ୍ରସିଦ୍ଧି ସତ୍ତ୍ୱେ ଓ ତାଙ୍କ ନାଁରେ ବହୁ ରଚନା ରଚିତ ହୋଇଥିଲେ ହେଁ, ସେ ଓଡ଼ିଶାବାସୀ ଥିବାର ପ୍ରମାଣ ନାହିଁ । ଖୁବ୍ ବେଶୀରେ ତାଙ୍କୁ ଭାରତର ପୂର୍ବାଞ୍ଚଳର ଲୋକ ରୂପେ ଗ୍ରହଣ କରାଯାଇ ପାରେ । ତେବେ ବି ତାଙ୍କ ପ୍ରଚାରିତ ମାର୍ଗର ସାଧକମାନେ ହିଁ ଥିଲେ ଓଡ଼ିଆ ସାହିତ୍ୟର ଆଦିସ୍ରଷ୍ଟା, ସେଥିପାଇଁ ସେମାନେ ସେମାନଙ୍କର ଗୁରୁ ଗୋରେଖନାଥଙ୍କୁ ଓଡ଼ିଶାର ଆଦି କବି ରୂପେ ଗ୍ରହଣ କରିବାକୁ କୁଣ୍ଠାବୋଧ କରି ନାହାନ୍ତି ।

ଓଡ଼ିଆ ଭାଷା ଓ ସାହିତ୍ୟର ଆଧୁନିକ ରୂପ ବିକଶିତ ହେବା ପାଇଁ ହଜାରେ ବର୍ଷରୁ ଅଧିକ ସମୟ ଲାଗିଥିଲା । ଏହା କେତେବେଳେ ପାଲି ଭିତରେ ଆତ୍ମ ପ୍ରକାଶ କରୁଥିଲା ଓ କେତେବେଳେ ପ୍ରାକୃତ ମଧରେ । ଏହିପରି ଧୀରେ ଧୀରେ ଗୋଟିଏ ଗୋଟିଏ ଶବ୍ଦରୁ ବାକ୍ୟ ଗଠିତ ହେଲା, ଓ ତା' ପରେ ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତାବ୍ଦୀରୁ ଅବାରିତ ଧାରାରେ ପ୍ରବାହିତ ହୋଇ ଏହା ଭାରତବର୍ଷର ଏକ ପ୍ରଖ୍ୟାତ ଭାଷା ଭାବେ ପ୍ରତିଷ୍ଠିତ ହେଲା । ଓଡ଼ିଆ ଭାଷାର ଏହି ଅତୀତ ଇତିହାସ ଓଡ଼ିଶାରେ ଲୁପ୍ତ ହେଲେ ହେଁ, ବିଭିନ୍ନ ପ୍ରାନ୍ତରୁ ସଂଗୃହୀତ ଏହାର କ୍ଷୀଣ ଧାରାକୁ ସଂଯୋଗ କରି ଓଡ଼ିଆ ଭଷାର ପୃଷ୍ଠଭୂମି ପ୍ରସ୍ତୁତ କରାଯାଇଛି ।

# ତୃତୀୟ ପରିଚ୍ଛେଦ
# ସୀସୁବେଦ

ଅଜ୍ଞାତବାସରେ ଥିବା ଅଗଣିତ ଗ୍ରନ୍ଥମାଳା ମଧ୍ୟରୁ ଆବିଷ୍କୃତ **ସୀସୁ ବେଦର** ପ୍ରକାଶ ନାନା ଧର୍ମ ତଥା ଆଦି ଓଡ଼ିଆ ସାହିତ୍ୟର ଆଲୋଚନା ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ପଞ୍ଚଦଶ ଶତାବ୍ଦୀ ବେଳକୁ ସାରଳା ମହାଭାରତରେ ଓଡ଼ିଆ ଭାଷାର ଯେଉଁ ସମୃଦ୍ଧ ରୂପ ପ୍ରକାଶ ପାଇଛି; ତା' ପୂର୍ବରୁ ଓଡ଼ିଆ ଭାଷା କିପରି କେଉଁ ରୀତିରେ ଗଢ଼ି ଉଠିଥିଲା, ସେ କଥା ଅଦ୍ୟାବଧି ଅସ୍ପଷ୍ଟ । ନରସିଂହ ଦେବ ଶିଳାଲେଖ, **କଳସା ଚଉତିଶା, ମାଦଳା ପାଞ୍ଜି** ଓ **ସାରଳା ମହାଭାରତ** ପ୍ରଭୃତି ମୂଳ ସାମଗ୍ରୀକୁ ଅବଲମ୍ବନ କରି ସମାଲୋଚକମାନେ ବିଗତ କେତେ ବର୍ଷ ଧରି ଅନ୍ଧକାରାଚ୍ଛନ୍ନ ଯୁଗକୁ ନିରୀକ୍ଷଣ କରିବାର ପ୍ରଚେଷ୍ଟା କରି ଆସିଛନ୍ତି । **ସୀସୁ ବେଦର** ସଂପାଦନା ଓଡ଼ିଆ ସାହିତ୍ୟର ସେହି ଆଦିକାଳକୁ ଅଧ୍ୟୟନ କରିବା ପାଇଁ କେବଳ ସହାୟକ ନୁହେଁ, ସାରଳା ପୂର୍ବ ତଥା ପରବର୍ତ୍ତି ଓଡ଼ିଆ ସାହିତ୍ୟକୁ ପରୀକ୍ଷା କରି ଦେଖିବା ପାଇଁ ବିଶେଷ ଆବଶ୍ୟକ ।

## 'ସୀସୁ' (୧) ଶବ୍ଦର ମୂଳ କଥା

ଶିଶୁ କହିଲେ ଓଡ଼ିଆରେ ଶିଶୁ କାଠ, ପୁଣି ପିଲା ଅର୍ଥରେ ବୁଝିହୁଏ । ପୂଜ୍ୟ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି **ଶିଶୁ ବେଦର** ନିର୍ବେଦ ନିସ୍ତୈ ଗୁଣ (୨) ଓ ବିନ୍ଦୁ (୩) ଅର୍ଥ ଗ୍ରହଣ କରିଛନ୍ତି । ସିଦ୍ଧ-ସାଧକ-ସେବିତ **ସୀସୁବେଦ** ନିଶ୍ଚିତ ଭାବରେ କାଠ, ବା ପିଲାଙ୍କ ବେଦ ନୁହେଁ । ନିର୍ବେଦ ଓ ନୈସ୍ତୈଗୁଣ ପ୍ରଭୃତି ଏହାର ରୂପକାତ୍ମକ **ଅର୍ଥ ହୋଇପାରେ** । ଏ ସବୁରୁ ସୀସୁ ଶବ୍ଦର ପ୍ରକୃତ ମର୍ମବାଣୀ ଜାଣି ହୁଏ ନାହିଁ ।

---

(୧) ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ 'ଶିଶୁ' ଲେଖାଯାଇଥିଲେ ବି ଅପଭ୍ରଂଶ ଶବ୍ଦ ହେତୁ ଅପଭ୍ରଂଶ ଶବ୍ଦର ନୀୟମାନୁଯାୟୀ 'ସୀସୁ' ହେବା ଉଚିତ । ପୋଥିରେ 'ସୀସୁ' ଲେଖାଅଛି ।

(୨) **ପ୍ରେମ ଭକ୍ତି ବ୍ରହ୍ମ ଗୀତା,** (ପ୍ରାଚୀ), ମୁଖବନ୍ଧ । (ପୃ-୩)

(୩) **ଅଣାକାର ସଂହିତା ଓ ବ୍ରହ୍ମଗୀତା** ଟୀକା ଭାଗ (ପୃ-୪), ୩ୟ କଳପ 'ଶିଶୁଶବଦେ ଗୀତା ବିନ୍ଦୁରେ'

ପୋଥି ମଧ୍ୟରୁ ସୀସୁ ଶବ୍ଦର 'ଶିଷି' (୪) ଓ 'ଶୁଶୁ' (୫) ପାଠ ମିଳେ। ଓଡ଼ିଆରେ 'ଶିଶୁ'(ଶିଷି) (୬) ଶବ୍ଦର ବ୍ୟବହାର ଅଛି । ଏହା ସଂସ୍କୃତ ଶିଷ୍ୟ ଶବ୍ଦର ଅପଭ୍ରଂଶ । ପୋଥିର ଆରମ୍ଭରେ "ଓଁ ଗୁରୁ ଶିଷ୍ୟ ସମ୍ବାଦ" ଲେଖାଥିବା ହେତୁ ଏହାକୁ ଶିଷ୍ୟବେଦ, ପୁଣି **କୁମାର ବୋଧନ** (୭) **କୁମାର ବୋଧ**, (୮) ଓ ପ୍ରାଚୀନ ହୀନ୍ଦୀ ସାହିତ୍ୟର **ଶିଶୁବୋଧ** (୯) ପ୍ରଭୃତି ଗ୍ରନ୍ଥର ନାମ ସାଦୃଶ୍ୟରେ 'ଶିଷ୍ୟ ବୋଧ' କୁହାଯାଇ ପାରେ। 'ଶିଶୁ' ପାଠକୁ ସାରଳା ମହାଭାରତରେ ଉଲ୍ଲିଖିତ ଥିବା 'ସୁଷୁମା ବେଦ' (୧୦) ନାମ ଦେଲେ ଅସଙ୍ଗତ ହୁଏ ନାହିଁ। ଯୋଗମାର୍ଗୀମାନେ ମଧ ସୁଷୁମ୍ନା ନାଡ଼ିକୁ ସାଧନାର ପ୍ରଧାନ ସହାୟକ ରୂପେ ନିର୍ଦ୍ଦେଶ କରିଥାନ୍ତି; କିନ୍ତୁ ପରବର୍ତ୍ତୀ ଓଡ଼ିଆ ସାହିତ୍ୟ ଶୁଶୁ ଓ ଶିଷି ପାଠକୁ ଗ୍ରହଣ ନ କରି ଗ୍ରନ୍ଥକୁ 'ସୀସୁବେଦ' ନାମରେ ହିଁ ନାମିତ କରିଛି।

ପରବର୍ତ୍ତୀ ପରମ୍ପରାରେ **ସୀସୁବେଦକୁ** ଋକ୍, ସାମ, ଯଜୁ, ଅଥର୍ବ ବେଦ ସହ ଗଣନା କରି ବେଦର ସଂଖ୍ୟା ପାଞ୍ଚ କରାଯାଇ ଥାଏ। ଏହି ଗଣନା କେବଳ ଓଡ଼ିଆ ସାହିତ୍ୟରେ ନୁହେଁ, ଭାରତୀୟ ଅନ୍ୟାନ୍ୟ ସାହିତ୍ୟରେ ମଧ ଦେଖିବାକୁ ମିଳେ। ହିନ୍ଦୀ ସାହିତ୍ୟର ଅଷ୍ଟାଦଶ ଶତାବ୍ଦୀର କବି ତୁଳସୀ ସାହେବଙ୍କ **ଘଟ ରାମାୟଣ** ଶୀର୍ଷକ ଗ୍ରନ୍ଥରେ ଚାରିବେଦ ସହ ଅନ୍ୟ ଗୋଟିଏ ବେଦର ଗଣନା ହୋଇଛି।

---

(୪) (ଖ) ପୋଥି ପାଠ।

(୫) (ଗ) ପୋଥି ପାଠ।

(୬) (ଶିଷି)-"ସେ ରୂପେ ସେ ଗଦାହେଲେ ଇନ୍ଦ୍ରଙ୍କର ଶିଷି।"

(**କୃଷ୍ଣସିଂହ ମହାଭାରତ**-ବନପର୍ବ)

(୭) ଦୀନକୃଷ୍ଣଙ୍କ ରଚିତ ଅପ୍ରକାଶିତ **କୁମାର ବୋଧନ** କାବ୍ୟଗ୍ରନ୍ଥ।

(୮) କୌଣସି **ଅଜ୍ଞାତ** କବିକୃତ **କୁମାର ବୋଧ** ଗଦ୍ୟ (ଅପ୍ରକାଶିତ)

(୯) 'ନାଗରୀ ପ୍ରଚାରିଣୀ ପତ୍ରିକା' (ପୃ-୪୮), **ବର୍ଷ ୫୪, ସଂବତ୍ ୨୦୦୬, ଅଙ୍କ ୧**।

(୧୦) "ବେନି **ଅୟୁତ** ବ୍ରାହ୍ମଣ ଧନୁର୍ବେଦ ଜାଣ,

ସୁଷୁମୁନା ବେଦ ନବ ଦ୍ୱିଜ କରେ ଗାନ।" ବିରାଟ ପର୍ବ (ପୃ. ୧୬୪)

ତାହା ହେଉଛି ସୁଷମ ବେଦ (୧୧)। ଏହି 'ସୁଷମ' ଶବ୍ଦ ସଂସ୍କୃତ 'ସୁକ୍ଷ୍ମ' ଶବ୍ଦର ଅପଭ୍ରଂଶ (୧୨)। ସୀସୁବେଦ ସହ ଉଚ୍ଚାରଣଗତ ସାଦୃଶ୍ୟ ହେତୁ ସୁଷମ ଶବ୍ଦକୁ ସୀସୁ ଶବ୍ଦର ବା ସୀସୁ ଶବ୍ଦକୁ ସୁଷମ ଶବ୍ଦର ରୂପାନ୍ତର ରୂପେ ଗ୍ରହଣ କରାଯାଇ ପାରେ। କିନ୍ତୁ **ସୁଷମ ବେଦର** ରୂପରେଖ ଜଣା ନ ଯିବା ପର୍ଯ୍ୟନ୍ତ **ସୀସୁ** ଓ **ସୁସମ ବେଦକୁ** ଏକ ଓ ଅଭିନ୍ନ ରୂପେ ଗ୍ରହଣ କରିବା ଅନୁଚିତ।

**ସାରଳା ମହାଭାରତରୁ** ପରେ ଉଦ୍ଧୃତ ହୋଇଥିବା **ସୀସୁବେଦର** ସୃଷ୍ଟି ସମ୍ବନ୍ଧୀୟ ଗଳ୍ପ ଅନୁଶୀଳନ କଲେ ଜଣାପଡ଼ିବ ଯେ ଈଶ୍ୱର ବା ଶିବ କ୍ରୋଧାନ୍ୱିତ ହୋଇ ବେଦବକ୍ତା ଧାତାଙ୍କର ଶିରଛେଦ କରିବା ଫଳରେ **ସୀସୁବେଦର** ଉତ୍ପତ୍ତି ହେଇଛି। ଅଧ୍ୟାପକ ବାଗ୍‌ଚି ମହାଶୟ ଶିରଛେଦ ତନ୍ତ୍ରର (୧୩) ଉତ୍ପତ୍ତି ନିର୍ଦ୍ଦେଶ କରିବାକୁ ଯାଇ ସଂସ୍କୃତ **କୂର୍ମ ପୁରାଣରୁ** ଏହି ଗଳ୍ପର ଉଦ୍ଧାର କରିଛନ୍ତି। ସେତେବେଳେ **ସୀସୁବେଦକୁ** 'ଶୀର୍ଷଚ୍ଛେଦ ବେଦ' ବା 'ଶୀର୍ଷବେଦ' କୁହାଯାଇ ପାରେ। ଅନ୍ୟ ପକ୍ଷରେ ସଂସ୍କୃତ 'ଶୀର୍ଷ 'ଶବ୍ଦ ଅପଭ୍ରଂଶ ସାହିତ୍ୟରେ 'ସୀସୀ' (୧୪) ଓ 'ସୀସୁ'ରେ ପରିବର୍ତ୍ତିତ ହୋଇଥିବାର ପ୍ରମାଣ ଅଛି। ଜୋଇନ୍ଦୁ ରଚିତ **ପରମାତ୍ମା ପ୍ରକାଶ** ଶୀର୍ଷକ ଗ୍ରନ୍ଥରୁ 'ସୀସୁ'ଶବ୍ଦର ନିମ୍ନୋକ୍ତ ବ୍ୟବହାର ମିଳେ।

ସଂତା ବିସୟ ଜୁ ପରିହରହ ବଲି କିଜ୍ଜଉଁ ହଉଁ ତାସୁ
ସୋ ଦଇବେଣ ଜି ମୁଁଡ଼ିୟଉ ସୁସୀଖଡ଼ିଲ୍ଲ ଲଉ ଜାସୁ।

ଏହାର ସଂସ୍କୃତ ରୂପାନ୍ତର ହେଉଛି-

ସତଃ ବିଷୟାନ୍ ଯଃ ପରିହରତି ବଲିଂ କରୋମି ଅହଂ ତସ୍ୟା,
ସଦୈବେନ ଏବ ମୁଣ୍ଡିତ ଶୀର୍ଷ ଖଲ୍ଲାଟଂ ଯସ୍ୟ। (୧୫)

---

(୧୧) ''ବେଦ ଚାରିବ୍ରହ୍ମା ନିଜ କୀନ୍ହା, ପଞ୍ଚମ ସୁଷମ ବେଦ କୋ ଚୀନ୍ହା।'' -**ଘଟ ରାମାୟଣ** ୧ମ ଭାଗ (ପୃ-୧୨୮)। ତୁଳସୀ ସାହେବଙ୍କ ମତରେ ବେଦରେ ସଂଖ୍ୟା ଦଶ। ସେଥିରୁ ଚାରି ଗୁପ୍ତ ଓ ଛ' ବେଦ ପ୍ରକାଶ ପାଏ। ସାରଳା ଦାସ ମଧ୍ୟ ଏଗାର ବେଦର ଗଣନା କରିଛନ୍ତି। (ଉଦ୍‌ଯୋଗ ପର୍ବ)

(୧୨) ସଂତଦାସ ମାହେଶ୍ୱରୀ ଲିଖିତ **ରାମାୟଣ କା ଗୂଢ଼ ରହସ୍ୟ** (ପୃ-୧୯୧)

(୧୩) **Studies in Tantras** (Page - 9)

(୧୪) ଶ୍ରୀଯୁକ୍ତ ହରପ୍ରସାଦ ଶାସ୍ତ୍ରୀ ସଂପାଦିତ **ସରୋଜ ବ୍ରଜେର ଦୋହାକୋଷ** ବଙ୍ଗୀୟ ସାହିତ୍ୟ ପରିଷଦ ପ୍ରକାଶିତ ଗ୍ରନ୍ଥ (ପୃ-୮୦) -''ସୀସସୁ ବାହିଅ ଏ ଜଡ଼ଭାଁ ଗେଁ।'

(୧୫) **Paramatma Prakasha.** (Page - 288) Dr A. N. Upadhaya.

ହେମଚନ୍ଦ୍ରଙ୍କ ବ୍ୟାକରଣରେ ଏହି ପଦକୁ ପରିବର୍ତ୍ତିତ ରୂପରେ ଗ୍ରହଣ କରାଯାଇଛି ।

ସଂତା ଭୋଗ ଜୁ ପରିହରଇ ତସୁ କଂତ ହୋ ବଲି କୀସୁ,
ତସୁ ଦଇବେଣ ବି ମୁଡ଼ିୟଉଁ ଜସୁ ଖଲ୍ଲ ଲି ହଡ଼ଉଁ ସୀସୁ । (୧୬)

ଅନୁମିତ ହୁଏ, ଓଡ଼ିଆ ଭାଷାର ଏହି ସୀସୁ ଶବ୍ଦ ଅପଭ୍ରଂଶ ସାହିତ୍ୟର'ସୀସୁ' ଶବ୍ଦ ସଦୃଶ 'ଶୀର୍ଷ' ଶବ୍ଦର ଅପଭ୍ରଂଶ । ସେଥିପାଇଁ ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ 'ଶୀର୍ଷ' ଶବ୍ଦର ପରମ ବା ଶ୍ରେଷ୍ଠ ଅର୍ଥ ଗ୍ରହଣ କରି ସୀସୁବେଦକୁ 'ପରମ' (୧୭) ସହ ଚିହ୍ନିତ କରାଯାଇଛି ।

## ସୀସୁବେଦର ସ୍ରଷ୍ଟା ଓ ସୃଷ୍ଟି

**ସୀସୁବେଦ** ସଦୃଶ, **ସୀସୁବେଦର** ରଚୟିତାଙ୍କ ବିବରଣୀ ବହୁ ଅନୁସନ୍ଧାନ-ସାପେକ୍ଷ । ଗ୍ରନ୍ଥ ମଧ୍ୟରୁ ଯେତୋଟି ନାମର ସୂଚନା ମିଳେ, ସେ ସମସ୍ତଙ୍କୁ ଗ୍ରନ୍ଥକର୍ତ୍ତା ବୋଲି କହିହୁଏ ନାହିଁ । ଶେଷ ଶ୍ଳୋକର ଶେଷ ପଂକ୍ତିରେ ଯେଉଁଠି ରଚୟିତାଙ୍କ ନାମ ରହିବାର କଥା, ସେଠି ଲେଖାଅଛି- ''ବଦନ୍ତି ଈଶ୍ୱରେ ଏତ ସିଧଙ୍କର ବିଶ୍ୱାସ'' । ଏଥିରୁ ସିଦ୍ଧଗଣଙ୍କର ବିଶ୍ୱାସ ତଥା ସିଦ୍ଧଗୁରୁ ଈଶ୍ୱରଙ୍କ ପ୍ରାଧାନ୍ୟ ଦେଖିହୁଏ । ଖୁବ୍ ବେଶିରେ ଏହି 'ଈଶ୍ୱର'ଙ୍କୁ କେହି ଈଶ୍ୱର ନାମଧେୟ ବ୍ୟକ୍ତି ବୋଲି ଗ୍ରହଣ କରି ପାରନ୍ତି; କିନ୍ତୁ 'ଈଶ୍ୱର' ଶବ୍ଦ ଯେପରି ମାନ୍ୟାର୍ଥରେ, ପୁଣି 'ବଦନ୍ତି' ପରି ତୃତୀୟ ପୁରୁଷର କ୍ରିୟା ସହ ବ୍ୟବହୃତ ହୋଇଛି, ସେଥିରେ ଈଶ୍ୱରଙ୍କୁ ଗ୍ରନ୍ଥକର୍ତ୍ତା ନ କହି, ନାଥ ପରଂପରାର ଆଦିସିଦ୍ଧ ଓ ନାଥମାନଙ୍କର ପରମ ଉପାସ୍ୟ ଦେବତା ରୂପେ ଗ୍ରହଣ କରିବା ବିଶେଷ ଯୁକ୍ତିଯୁକ୍ତ । ସେଥିପାଇଁ ଗ୍ରନ୍ଥର ସମାପ୍ତି ପଂକ୍ତିରେ ରଚୟିତା ଈଶ୍ୱରଙ୍କର ଉକ୍ତିକୁ ପ୍ରାଧାନ୍ୟ ଦେଇ ସମ୍ମାନିତ କରିଛନ୍ତି ।

ଈଶ୍ୱର ବା ଶିବଙ୍କ ବ୍ୟତୀତ ଗ୍ରନ୍ଥ ମଧ୍ୟରୁ ଯେଉଁମାନଙ୍କ ନାମ ମିଳେ ସେମାନେ ହେଉଛନ୍ତି-ମୀନ ଚଉରଙ୍ଗିଉ, ଗୋରେଖ ଓ ମତ୍ସେନ୍ଦ୍ର ମୀନ । ମତ୍ସେନ୍ଦ୍ର ଏକ ବା ଦୁଇ ଏ ବିଷୟରେ ବହୁ ମତ ବିଦ୍ୟମାନ । ତେବେ ସମାଲୋଚକ ଡ଼ଃ ବାଗ୍‌ଚୀ ଓ ଡ଼ଃ ହଜାରୀ ପ୍ରସାଦ ଦ୍ୱିବେଦୀଙ୍କ ମତରେ ପ୍ରାଚୀନ କାଳରେ ମତ୍ସେନ୍ଦ୍ର ନାଥ, ମୀନ ବା ମୀନନାଥ ନାମରେ ପରିଚିତ ଥିଲେ । (୧୮) ଆଲୋଚିତ ଗ୍ରନ୍ଥରେ ମଧ ମୀନ ଓ ମଚ୍ଛଇନ୍ଦ୍ରଙ୍କୁ ଏକ ଓ ଅଭିନ୍ନ ବ୍ୟକ୍ତି ରୂପେ ଗ୍ରହଣ କରାଯାଇଛି । ପଦଟି ହେଉଛି-

ରଇକ୍ଷା କରନ୍ତି ମୀନ ଚଉରଙ୍ଗିଉ ଗୋରେଖ ଅବଧୁତ ମନ ମଚ୍ଛଇନ୍ଦ୍ର
ସୁରେଶ୍ୱର ଚେତନା ଚଉରଙ୍ଗୀ ଜ୍ଞାତ ଶ୍ରୀ ଗୋରେଖ ନାଥ ।

---

(୧୬) **Sutra IV 389, Page 46, 'Paramatama Prakasha.'**ର ଭୂମିକା ଦେଖ ।

(୧୭) ''ପରମ ଶିଶୁବେଦ କହି'' -୪ର୍ଥ ଅଧାୟ ୧୧ ପୃଷ୍ଠା ।

(୧୮) **ନାଥ ସଂପ୍ରଦାୟ**, (ପୃ-୪୧)

ଏହି ପଦର ପ୍ରଥମ ପାଦରେ ମୀନ, ଚଉରଙ୍ଗିଉ, ଗୋରେଖ ପ୍ରଭୃତି ସିଦ୍ଧଙ୍କ ନାମ ଓ ଦ୍ୱିତୀୟ ପାଦରେ ସେହି ସବୁ ନାମର ପ୍ରତୀକାତ୍ମକ ଅର୍ଥ ଦିଆଯାଇଛି । କିନ୍ତୁ ଦ୍ୱିତୀୟ ପାଦରେ ରଚୟିତା ମୀନ ନାମ ସ୍ଥାନରେ ମଛଇନ୍ଦ୍ର ନାମ ଗ୍ରହଣ କରିଛନ୍ତି । କାରଣ ପ୍ରାଚୀନ ପରମ୍ପରାରେ ମତ୍ସେନ୍ଦ୍ର ନାଥଙ୍କ ପ୍ରାକୃତ 'ମଛନ୍ଦ' ନାମକୁ ହିଁ ବ୍ୟାଖ୍ୟା କରାଯାଇଥାଏ । **ତନ୍ତ୍ରାଲୋକ**ରେ ଅଭିନବ ଗୁପ୍ତପାଦ ମଛନ୍ଦ ସ୍ତୁତି କରି ଲେଖିଛନ୍ତି -

ରାଗାରୁଣ ଗ୍ରନ୍ଥି ବିଳାପକୀର୍ଣ୍ଣଂ ଯୋ ଜାଲମାତାନ ବିତାନ ବୃତ୍ତି,
କଲୋମ୍ଭିତଂ ବାହ୍ୟପଥେ ଚକାର, ସ୍ୟାନ୍ମୋସ ମଛନ୍ଦ ବିଭୁଃ ପ୍ରସନ୍ନଃ ।

ଏହି ଗ୍ରନ୍ଥର ଟୀକାକାର ଜୟଦ୍ରଥ ମଧ୍ୟ ଏହିପରି ଗୋଟାଏ ଶ୍ଳୋକର ଉଦ୍ଧାର କରିଛନ୍ତି-

ମଚ୍ଛାଃ ପାଶାଃ ସମାଖ୍ୟାତା ଶ୍ଚପଳାଶ୍ଚିତ୍ତ ବୃତ୍ତୟଃ
ଛେଦିତାସ୍ତ ଯଦା ତେନ ମଛନ୍ଦସ୍ତେନ କୀର୍ତ୍ତିତଃ ।

ଡ଼ଃ ଦ୍ୱିବେଦୀ ବିଚାର ଦାସଙ୍କ ମତ ଉଦ୍ଧୃତ କରି କୁହନ୍ତି କବୀର ସଂପ୍ରଦାୟରେ 'ମଛ' ଶବ୍ଦର ଅର୍ଥ 'ମନ' ଅର୍ଥାତ୍ ଚପଳ ଚିତ୍ତବୃତ୍ତି । (୧୯) **ସୀସୁବେଦ**ରେ ରଚୟିତା କେବଳ ଏହି ପ୍ରାଚୀନ ପରମ୍ପରାକୁ ପାଳନ କରିଛନ୍ତି । ପକ୍ଷାନ୍ତରରେ ଈଶ୍ୱରଙ୍କ ପରେ ଏହି ମତ୍ସେନ୍ଦ୍ର ହିଁ ୮୪ ସିଦ୍ଧ ପରମ୍ପରାର ଦ୍ୱିତୀୟ ପ୍ରଧାନ ଗୁରୁ । ଡ଼ଃ ଦ୍ୱିବେଦୀଙ୍କ ଉକ୍ତି ଉଦ୍ଧାର କଲେ - ''ସେ ହେଉଛନ୍ତି ଆଦିନାଥଙ୍କ ପରେ ମହତ୍ତ୍ୱପୂର୍ଣ୍ଣ, ମାନବ ପରମ୍ପରାର ସର୍ବପ୍ରଥମ ଅବଲୋକିତେଶ୍ୱରଙ୍କ ଅବତାର, ନାଥ ପରମ୍ପରାର ଆଦିଗୁରୁ । କୌଳାଚାର ମାର୍ଗର ସିଦ୍ଧ ପୁରୁଷ, କାଶ୍ମୀର ଶୈବାଗମରେ ସମ୍ମାନିତ ଓ ମଧ୍ୟ ଯୁଗର ଜଣେ ପ୍ରସିଦ୍ଧ ସାଧକ ।'' (୨୦) **ସୀସୁବେଦ**ରେ ସେଥିପାଇଁ ତାଙ୍କୁ ପ୍ରମାଣିକ ରୂପେ ଗ୍ରହଣ କରାଯାଇଛି ।

ଏହି ମତ୍ସେନ୍ଦ୍ରଙ୍କର ଶିଷ୍ୟ ହେଉଛନ୍ତି ଗୋରେଖ, **ସୀସୁବେଦ**ରେ ତାଙ୍କର ଉଲ୍ଲେଖ ବହୁ ଥର ହୋଇଛି । ପରମ୍ପରାରେ ମଧ୍ୟ **ସୀସୁବେଦ**ର ରଚୟିତା ରୂପେ ଗୋରେଖଙ୍କୁ ହିଁ ଗ୍ରହଣ କରାଯାଇଛି । ସେଥିପାଇଁ ହୁଏତ କେହି ତାଙ୍କୁ ଗ୍ରନ୍ଥର ରଚୟିତା ରୂପେ ଗ୍ରହଣ କରିବାକୁ ଲାଳାୟିତ ହୋଇପାରନ୍ତି । କିନ୍ତୁ ଗୋରେଖ ନାମ ସମ୍ବଳିତ ବିଭିନ୍ନ ପଂକ୍ତିକୁ ପରୀକ୍ଷା କରି ଏତିକି ଜାଣିହୁଏ ଯେ **ସୀସୁବେଦ**ର ରଚୟିତା ବହୁ ସ୍ଥଳରେ ନିଜ ଉକ୍ତିକୁ ସମର୍ଥନ କରିବା ପାଇଁ ଗୋରେଖଙ୍କୁ ପ୍ରମାଣ ରୂପେ ଗ୍ରହଣ କରିଛନ୍ତି । ଗୋରେଖଙ୍କୁ ପ୍ରଯୁଜ୍ୟ ମାନ୍ୟାର୍ଥ ଶବ୍ଦାବଳୀ ମଧ୍ୟ ଏହି ଅନୁମାନକୁ ପୁଷ୍ଟ କରେ । ନାଥ ପନ୍ଥାରେ ମତ୍ସେନ୍ଦ୍ରଙ୍କ ସଦୃଶ ଗୋରେଖଙ୍କ ମହିମା ''ଆସମୁଦ୍ର ହିମାଚଳ ବ୍ୟାପ୍ତ'' । ସବୁଠି ତାଙ୍କରି ପ୍ରଚାର, ତାଙ୍କରି ଉପାସନା । ଏପରିକି ତାଙ୍କର ନିଜଗୁରୁ ମତ୍ସେନ୍ଦ୍ରଙ୍କୁ ସେ ବହୁ ସ୍ଥଳରେ ଅତିକ୍ରମ କରିଯାଇଛନ୍ତି । ଆଧୁନିକ ଭାରତୀୟ

---

(୧୯) **ନାଥ ସଂପ୍ରଦାୟ**, (ପୃ-୩୯)

(୨୦) **ନାଥ ସଂପ୍ରଦାୟ**, (ପୃ-୩୯)

ଭାଷା ଓ ସାହିତ୍ୟର ମୂଳ ଉତ୍ସ ହେଉଛନ୍ତି ଏହି ଗୋରେଖ ଓ ତାଙ୍କରି ପ୍ରଚାରିତ ଧର୍ମ । ତାଙ୍କରି ମହିମା ପ୍ରଚାର କରି କେତେ କାବ୍ୟ, କେତେ କିମ୍ବଦନ୍ତୀ ଏ ଦେଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଗଢ଼ିଉଠିଛି, ତାହା ସଠିକ୍ ଭାବରେ କହିହୁଏ ନାହିଁ । ଏହିପରି ଜଣେ ସ୍ୱନାମଧନ୍ୟ ସିଦ୍ଧଗୁରୁଙ୍କୁ **ସୀସୁବେଦ** ସଦୃଶ ଏକ ନାଥଧର୍ମୀୟ ଗ୍ରନ୍ଥରେ ପ୍ରମାଣ ରୂପେ ଉଦ୍ଧାର କରିବା ଅସଙ୍ଗତ ତ ମୋଟେ ନୁହେଁ, ବରଂ ସ୍ୱାଭାବିକ ଓ ଯଥାର୍ଥ । ଚଉରଙ୍ଗିଉଙ୍କ ନାମ ଠିକ୍ ଏହି ଭାବରେ ଏ ଗ୍ରନ୍ଥରେ ଉଲ୍ଲିଖିତ । ସେମାନେ କେହି ଏ ଗ୍ରନ୍ଥର ରଚୟିତା ନୁହଁନ୍ତି ।

**ସୀସୁବେଦର** ଅନ୍ୟ ନାମ ହେଉଛି 'ପଞ୍ଚମ ବେଦ'। ପରବର୍ତ୍ତୀ ବହୁ ଓଡ଼ିଆ ଗ୍ରନ୍ଥରେ ଋକ, ସାମ, ଯଜୁ ଓ ଅଥର୍ବ ବେଦ ସହ ଏହାର ଗଣନା ହୋଇଥିବା କଥା ଆଗରୁ କୁହାଯାଇଛି । ପରମ୍ପରାରେ ବ୍ରହ୍ମା ହିଁ ଏହି ଚାରିବେଦର ସ୍ରଷ୍ଟା । ସେତେବେଳେ **ସୀସୁବେଦର** ସ୍ରଷ୍ଟା ରୂପେ ଏହି ବେଦପତି ବ୍ରହ୍ମାଙ୍କୁ ହିଁ ନିଆଯାଇ ପାରେ । କିନ୍ତୁ ଅଷ୍ଟାଦଶ ଶତାବ୍ଦୀର କବି ସାଧୁଦାସ ତାଙ୍କ ରଚିତ **ସଂସାର ସାର ଗୀତାରେ**( ୨୧ ) ଏ ଉକ୍ତିର ସ୍ପଷ୍ଟ ପ୍ରତିବାଦ କରି କୁହନ୍ତି-

ଋକ ଯଜୁ ସାମ ପୁଣି ଅଥର୍ବ ଯେ ବେଦ
କେବଳ ଜାଣନ୍ତି ବ୍ରହ୍ମା ଏ ଚାରିଙ୍କ ଭେଦ ।
ଶିଶୁବେଦ କଥା ଅଟେ ଅତ୍ୟନ୍ତ ଗୁପତ
ମହାଯୋଗୀ ଶିବ ଏକା ଜାଣନ୍ତି ସେ ତତ୍ତ୍ୱ । (୧ମ ଅ-୪ ପୃଷ୍ଠା)

ପଞ୍ଚଦଶ ଶତାବ୍ଦୀର ମହାକବି ଶୂଦ୍ରମୁନି ସାରଳା ଦାସ ତାଙ୍କ ରଚିତ **ମହାଭାରତରେ** **ସୀସୁବେଦ** ସମ୍ବନ୍ଧରେ ଗୋଟିଏ ସୁନ୍ଦର ଗଳ୍ପର ଅବତାରଣା କରିଛନ୍ତି । ଗଳ୍ପଟି ହେଉଛି ଏହିପରି- ଦିନେ ବେଦସ୍ରଷ୍ଟା ଧାତା ଚାରି-ବେଦ ପାଠ କରୁ କରୁ ଯୋଗ ବଳରେ ଆଉ ଗୋଟିଏ ବେଦ ସାଧନା କରିବାକୁ ଆରମ୍ଭ କରିଦେଲେ । ଏହି ବେଦ ପାଠ କରିବା ଫଳରେ କୈଳାସ ଅଞ୍ଚଳସ୍ଥିତ ଶିବଙ୍କର ଆସନ କମ୍ପିତ ହୋଇ ଉଠିଲା । ସେ କୈଳାସ ତ୍ୟାଗ କରି ଧାତାଙ୍କ ନିକଟରେ ଆସି ଉପନୀତ ହେଲେ ଏବଂ କେଉଁ ବେଦ ଉପରେ କାହାର ଅଧିକାର ସେ କଥା ମଧ୍ୟ ବୁଝେଇ ଦେଲେ । ସେଥିରୁ ଜଣାପଡୁଛି, ଧାତା ବାମଭାଗ ମୁଖରୁ ଋକବେଦ , ଦକ୍ଷିଣ ଭାଗ ବଦନରୁ ସାମବେଦ, ପୂର୍ବରୁ ଯଜୁ ଓ ପଶ୍ଚିମରୁ ଅଥର୍ବ ବେଦ ପାଠ କରିବାର କଥା । ଶିବଙ୍କର ପାଞ୍ଚ ବଦନ । 'ମୁହିଁ ଯେ ପଞ୍ଚ ବଦନ ଅଟଇ ଯୁଗତେ' -ସଦ୍ୟ, ବାମ୍, ଅଘୋର, ତତ୍ତ୍ୱ ଓ ଈଶ ହେଉଛି ଏହି ମୁଖର ନାଁ । ( ୨୨ ) ଶିବ ଏହି ପାଞ୍ଚ ମୁଖରେ ଯଥାକ୍ରମେ ଆୟୁ,

---

(୨୧) ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ପ୍ରକାଶିତ-ପ୍ରଥମ ଭାଗ ।

(୨୨) ପଦ୍ୟ-ସଦ୍ୟୋଜାତ-ପଶ୍ଚିମ ମୁଖ, ବାମ ବାମଦେବ-ଉତ୍ତର ମୁଖ, ଅଘୋର-ଦକ୍ଷିଣ ମୁଖ, ତତ୍ତ୍ୱ-ତତ୍-ପୁରୁଷ-ପୂର୍ବ, ଈଶ-ଈଶାନ-ଊର୍ଦ୍ଧ୍ୱ ।

ଜ୍ୟୋତି, ଧନୁ, ସୀସୁ ଓ ଗନ୍ଧର୍ବ ପ୍ରଭୃତି ବେଦ ପାଠ କରନ୍ତି । (୨୩) ସଭା ପର୍ବରେ ଶୁଦ୍ରମୁନି ସେହି ବେଦକୁ 'ଅଜପା ବେଦ' ବୋଲି କହିଛନ୍ତି ଓ ବ୍ରହ୍ମା ତାହାକୁ ଉର୍ଦ୍ଧ୍ୱ ମୁଖରେ ପାଠ କରୁଥିବାର ବର୍ଣ୍ଣନା ଅଛି । (୨୪) ବନ ପର୍ବରୁ ଜଣାଯାଏ ଶିବଙ୍କର ଯେଉଁ ବେଦକୁ ବ୍ରହ୍ମା ଯୋଗ ବଳରେ ପଢ଼ିଥିଲେ ସେ ହେଉଛି--''ଜପାଜପ ସୀସୁବେଦ''(୨୫) । ଏହି ବେଦପାଠ ପାଇଁ ଦୁଇ ଦେବତାଙ୍କ ମଧରେ ମନ ଅମେଳ ହୋଇଛି, ଓ ଶିବ କ୍ରୋଧାନ୍ୱିତ ହୋଇ ଶୂଳ ହସ୍ତରେ ବ୍ରହ୍ମାଙ୍କର ଶିରକୁ ପ୍ରହାର କରିଛନ୍ତି । ବର୍ଣ୍ଣିତ ଗଳ୍ପ **ସୀସୁବେଦ** ଉପରେ ଶିବଙ୍କର ପ୍ରାଧାନ୍ୟ ସ୍ପଷ୍ଟ କରିବା ସଙ୍ଗେ ସଙ୍ଗେ ଗ୍ରନ୍ଥର 'ବଦନ୍ତି ଈଶ୍ୱରେ' ଉକ୍ତିକୁ ସମର୍ଥନ କରେ ।

ପରବର୍ତ୍ତୀ ପରମ୍ପରାରେ **ସୀସୁବେଦର** ସୃଷ୍ଟି ସମ୍ବନ୍ଧୀୟ ବିବେଚନା ଆହୁରି କ୍ଲିଷ୍ଟ ହୋଇପଡ଼ିଛି । ଯଶୋବନ୍ତ ଦାସ ତାଙ୍କ ରଚିତ ଅପ୍ରକାଶିତ **ସଛ ବୋଲି**ରେ କହିଛନ୍ତି- ମଣିଷ ଶରୀରରେ ପାଞ୍ଚ ପବନ ଓ ପଞ୍ଚଭୂତ ସଦୃଶ ପଞ୍ଚୁ ବେଦ ବି ରହିଛି । ବେଦର ସୃଷ୍ଟି ଧ୍ୱନୀରୁ । ଧ୍ୱନୀ ଓଁ କାରରୁ ସମ୍ଭୂତ ଓ ନିଶବଦ ଘରୁ ଜାତ । ଏହି ପାଞ୍ଚ ପବନ (ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ) ପ୍ରକାଶ ପାଇବା ବେଳେ ପଞ୍ଚୁ ସ୍ୱରରେ ପ୍ରକାଶିତ ହୁଏ । ଏଇଥିରୁ ସାମ, ଯଜୁଃ, ଋକ୍, ଅଥର୍ବ ଓ ସୀସୁବେଦ ପ୍ରଭୃତି ପଞ୍ଚ ବେଦର ସୃଷ୍ଟି । ପ୍ରଥମ ଚାରିବେଦକୁ ବହ୍ମା ତାଙ୍କର ଚାରି ବଦନ-ଆନନ୍ଦ, ନନ୍ଦ, ତାମ୍ବର୍ଧ୍ଯ ଓ ଧ୍ୱର୍ମର ମୁଖରେ ପାଠ କରନ୍ତି ଓ **ସୀସୁବେଦ** ଶୂନ୍ୟ ଘରେ ଅବସ୍ଥାନ କରେ । ସତ୍ୟ ଯୁଗରେ ଏହି ପଞ୍ଚୁବେଦ ପାଞ୍ଚ ଋଷି (ମାରକଣ୍ଡ, ଗାଗ୍ରବ, କୃପାଜଳ, ନାରଦ ଓ ସ୍ୱୟମ୍ଭୁ)ଙ୍କ ମୁଖରେ ଘୋଷିତ ହୋଇଛି । ଦ୍ୱାପରରେ ଶ୍ରୀବକ୍ଷ ମହାସୀସୁବେଦ ଜାଣି ପାରିଛନ୍ତି । ଶ୍ରୀବକ୍ଷ ହେଉଛନ୍ତି ଶ୍ରୀକୃଷ୍ଣଙ୍କ ପଞ୍ଚସଖା ମଧରେ ଅନ୍ୟତମ । କଳିରେ ସେହି ଶ୍ରୀବକ୍ଷ ଅନନ୍ତ ଦାସ ରୂପରେ ଜନ୍ମଗ୍ରହଣ କରିଛନ୍ତି । ('ଶ୍ରୀବକ୍ଷ ସଖା ଅନନ୍ତକୁ ଜାଣ') । ଏହି ଅନନ୍ତ ଦାସ ଓଡ଼ିଆ ସାହିତ୍ୟରେ ସୀସୁ ଅନନ୍ତ ରୂପେ ପରିଚିତ । ପଞ୍ଚସଖା ମଧରେ ସବୁଠୁଁ ସାନ ବୋଲି ଏହାଙ୍କୁ ସୀସୁ ଆଖ୍ୟା ମିଳିଥିବା ଅନେକ ଅନୁମାନ କରନ୍ତି । ଓଡ଼ିଆ ସାହିତ୍ୟରେ ସୀସୁ ଆଖ୍ୟାଧାରୀ ଯେଉଁ କେତେଜଣ କବିଙ୍କ ସନ୍ଧାନ ମିଳେ ସେମାନଙ୍କ ମଧରୁ କେତେକ ହେଉଛନ୍ତି, **ଉଷାଭିଳାଷ**ର କବି ଶିଶୁ (ସୀସୁ) ଶଙ୍କର ଦାସ, **ଶଶି ଶେଣାର**

---

(୨୩) **ସାରଳା ମହାଭାରତ**-ମଧପର୍ବ, ପୃ-୧୯୯

(୨୪) ସଭାପର୍ବ, ପୃ-୨୫୩

(୨୫) ବନପର୍ବ, ପୃ-୩୭-୩୮ ।

କବି ଶିଶୁ ପ୍ରତାପ ରାୟ, **ଦାରୁବ୍ରହ୍ମ ଗୀତା**ର ରଚୟିତା ଶିଶୁ ଦାସ । ଅତୀତ ଓଡ଼ିଆ ସାହିତ୍ୟର କେତେକ ବିଶିଷ୍ଟ କବି ନାମ (୨୬) ପୂର୍ବରୁ 'ସୀସୁ' ଶବ୍ଦ ଦେଖି ଓ ଅନନ୍ତ ଦାସଙ୍କୁ **ସୀସୁବେଦ** ସହ ସଂପୃକ୍ତ କରିବାର ପରମ୍ପରା ପରୀକ୍ଷା କରି ଏଇ ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ଯେ, ନାମ ପୂର୍ବରୁ ସଂପୃକ୍ତ ହୋଇଥିବା 'ସୀସୁ' ଶବ୍ଦ ସୀସୁବେଦର ଅବଶେଷ । ଆଉ ସେ ଯୁଗର କବି ସବୁ 'ସୀସୁ' ଶବ୍ଦକୁ ନାଁ ପୂର୍ବରୁ ଯୋଗ କରି ନିଜକୁ ଗୌରବାନ୍ୱିତ କରୁଥିଲେ ।

ସେହି **ସନ୍ଥ ବୋଲି**ରେ ଅନନ୍ତ ଦାସଙ୍କୁ ଶିଶୁ ଅନନ୍ତ, ପୁଣି, ସତ ଅନନ୍ତ କୁହାଯାଇଛି । ବଳରାମ ଦାସଙ୍କ **ଛତ୍ରିଶ ଗୁପ୍ତ ଗୀତା**ରେ (୨୭) 'ସତ ସୁକୃତ ଶୀଶୁବେଦ' ଲେଖା ଅଛି । (୨୮) ଅନନ୍ତ ଦାସଙ୍କୁ ସୀସୁବେଦୀୟ ମାର୍ଗ ସହ ମିଳେଇ ନେବା ପରେ ଏହି 'ସତ' ଶବ୍ଦ ସ୍ୱତନ୍ତ୍ର ହୋଇପଡ଼େ । ଏହି 'ସତ' ଶବ୍ଦର ଅର୍ଥ କ'ଣ ? ହୁଏତ ସତ୍ୟ ଅର୍ଥରେ ବ୍ୟବହୃତ ହୋଇପାରେ ଯାହାକି ଏହାର ସାଧାରଣ ଅର୍ଥ, ବା ସୀସୁ ଶବ୍ଦ ପରି କୌଣସି ଅତୀତ ମାର୍ଗର ନିର୍ଦ୍ଦେଶକ । ନାଥ ଧର୍ମର ଅତୀତ ଇତିହାସ ପ୍ରତି ଦୃଷ୍ଟି ରଖି ବିଚାର କଲେ ଜଣାପଡ଼ିବ ଯେ ଉତ୍କଳରେ ଏହି ନାଥ ଧର୍ମର ଯେଉଁ ଶାଖା ସୃଷ୍ଟି ହୋଇ ପ୍ରଚାରିତ ହୋଇଥିଲା ତାହାର ନାମ ହେଉଛି 'ସତ୍ୟନାଥୀ', ଓ ଏହାର ମୂଳ ପ୍ରବର୍ତ୍ତକ ହେଉଛନ୍ତି 'ସତ୍ୟନାଥ', ବା 'ବ୍ରହ୍ମା' ।

ଉତ୍କଳରେ ନାଥ ଧର୍ମର ଇତିହାସ ଏ ପର୍ଯ୍ୟନ୍ତ ଲେଖା ଯାଇନାହିଁ । ଯେପରି ଜଣାପଡୁଛି, ପ୍ରାଚୀନ ଉତ୍କଳରେ ନାଥ ଧର୍ମର ଦୁଇଟି ସଂସ୍ଥା ପ୍ରଚଳିତ ଥିଲା । ଗୋଟିଏ ହେଉଛି, ପୂର୍ବକଥିତ ସତ୍ୟନାଥ ବା ବ୍ରହ୍ମାଙ୍କ ପ୍ରଚାରିତ ସତ୍ୟନାଥୀ ସମ୍ପ୍ରଦାୟ; ଓ ଅନ୍ୟଟି ହେଉଛି ଶିବ, ମତ୍ସେନ୍ଦ୍ର, ଗୋରେଖ ଓ ଚଉରଙ୍ଗି ପ୍ରଭୃତିଙ୍କ ସମ୍ପ୍ରଦାୟ । **ସୀସୁବେଦ** ରଚନା ହେବା ପଛରେ ଏହାକୁ ନିଜ ସମ୍ପ୍ରଦାୟର ଗ୍ରନ୍ଥ ରୂପେ ଗ୍ରହଣ କରିବାକୁ ଦୁଇ ପକ୍ଷରୁ ଆୟୋଜନ ହୋଇଛି । ଶେଷରେ **ସାରଳା ମହାଭାରତ** ରଚନା ହେଲା ବେଳକୁ ଈଶ୍ୱର ବା ଶିବଙ୍କୁ ଆଦି ଗୁରୁ ରୂପେ ଗ୍ରହଣ କରୁଥିବା ସଂପ୍ରଦାୟ ବିଶେଷ ପ୍ରାଧାନ୍ୟ ଲାଭ କରିଛନ୍ତି । ସେଥିପାଇଁ ଶୁଦ୍ରମୁନି ବ୍ରହ୍ମା ଓ ଶିବଙ୍କ ମଧ୍ୟରେ ଥିବା ମତ ବିରୋଧକୁ ସମାଧାନ କରି ଶିବଙ୍କୁ ହିଁ **ସୀସୁବେଦ**ର ବକ୍ତା ରୂପେ ନିର୍ଣ୍ଣୟ କରିଛନ୍ତି ।

---

(୨୬) ପୁରୀ ଜିଲ୍ଲାର ବାଲିପାଟଣା ଗ୍ରାମରେ ଏହି ଉପାଧିଧାରୀ କରଣ ବୈଷ୍ଣବ ଅଛନ୍ତି ।
- ଗୋପାଳଚନ୍ଦ୍ର ପ୍ରହରାଜଙ୍କ **ଭାଷାକୋଷ** ପୃ-୭୦୬ ।

(୨୭) ''ନସ ଦ ଲକ ଅନନ୍ତ ପ୍ରଧାନ ଚୈତନ୍ୟରେ ଚେତସ ପ୍ରମାଣ'' ଓ '' ସୂର୍ଯ୍ୟ ଏକାକ୍ଷର ସତ ଅନନ୍ତ ।''

(୨୮) ''ଦୋମୁହାଁ ସର୍ପ ପେଡ଼ିରେ ଗରଜଇ ଶୁଭେ ଅନହତ ଧ୍ୱନି,
ସତ ସୁକୃତ ଶିଶୁବେଦ ମାହିତେ ଯେବେ ପାରି ପାର୍ଥ ଚିହ୍ନି'' - ପୃଷ୍ଠା ।୧୪।

**ସୀସୁବେଦ** ସହ ସମ୍ପୃକ୍ତ ଥିବା ଶୂନ୍ୟ, ସ୍ୱୟମ୍ଭୁ, (୨୯) ଶ୍ରୀବତ୍ସ ଓ ଅନନ୍ତ ଦାସଙ୍କ ପରମ୍ପରା ପରୀକ୍ଷା କରାଯାଇ ପାରେ । ଅନନ୍ତ ଦାସ ବା ଶିଶୁ ଅନନ୍ତ ଷୋଡ଼ଶ ଶତାବ୍ଦୀର କବି । ପଞ୍ଚଦଶ ଶତାବ୍ଦୀର ରଚନା **ସାରଳା ମହାଭାରତ**ରେ **ସୀସୁବେଦ**ର ଉଲ୍ଲେଖ ଦେଖି ଏହାକୁ ସାରଳା ଦାସଙ୍କର ପୂର୍ବବର୍ତ୍ତୀ ରଚନା ରୂପେ ଗ୍ରହଣ କରିବା ହିଁ ସମୀଚୀନ । ସେତେବେଳେ ପଞ୍ଚସଖାର ଅନନ୍ତ ଦାସ **ସୀସୁବେଦ**ର କବି ନୁହନ୍ତି । ସ୍ୱୟମ୍ଭୁ ଓ ଶ୍ରୀବତ୍ସଙ୍କୁ ତାଙ୍କର ସଙ୍ଗତି ଓ ପରିବେଶ ମଧ୍ୟରୁ ସ୍ୱତନ୍ତ୍ର କରି ଦେଖିଲେ, ଏହି ସ୍ୱୟମ୍ଭୁ ବୋଧହୁଏ ପ୍ରାକୃତ '**ପଉମ ଚରିଉ**ର ରଚୟିତା, ଓ ଶ୍ରୀବକ୍ଷ ବା ଶ୍ରୀବତ୍ସ, ସାରଳା ଦାସଙ୍କ ପୂର୍ବବର୍ତ୍ତୀ ରଚନା **କଳା ଚଉତିଶା**ର କବି 'ବଚ୍ଛା ଦାସ' । ଶିବ ଓ ବ୍ରହ୍ମାଙ୍କ ସଂପ୍ରଦାୟ ମଧ୍ୟରେ ଥିବା କଳହରେ ସମାଧାନ ପାଇଁ ଶୂନ୍ୟ ହେଉଛି କେବଳ ମଧ୍ୟବର୍ତ୍ତୀ ପନ୍ଥା । ଏମାନଙ୍କୁ **ସୀସୁବେଦ** ସହିତ ସଂପୃକ୍ତ କରିବାର ଏକମାତ୍ର କାରଣ ହେଉଛି, ଏମାନଙ୍କର ପ୍ରସିଦ୍ଧି ଓ ପ୍ରାଚୀନତା ।

**ସୀସୁବେଦ**ର ସୃଷ୍ଟି ଓ ସ୍ରଷ୍ଟାଙ୍କର ଅନୁସନ୍ଧାନ କରି ବହୁ ସମ୍ଭବ ଓ ଅସମ୍ଭବ ଅନୁମାନର ଅନୁଶୀଳନ ହୋଇଛି । କିନ୍ତୁ କୌଣସିଥିରୁ ସଠିକ୍ ଭାବରେ କିଛି କହି ହେଉନାହିଁ । **ସୀସୁବେଦ**ର ରଚନା କାଳର ଆଲୋଚନା ଠିକ୍ ସେହିପରି ଅନ୍ୟ ଗୋଟିଏ ପ୍ରହେଳିକା । **ବୌଦ୍ଧ ଗାନ ଓ ଦୋହା** ସପ୍ତମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିବା ସମାଲୋଚକମାନେ ସ୍ଥିର କରିଛନ୍ତି । **ସୀସୁବେଦ**ର ଭାଷା ଓ ବିଶେଷ କରି ଛନ୍ଦ **ବୌଦ୍ଧଗାନ ଓ ଦୋହାର** ଅନୁଗାମୀ । ସେତେବେଳେ ଏହି ଗ୍ରନ୍ଥର ରଚନାକାଳ ତ୍ରୟୋଦଶ ବା କୌଣସି ପରବର୍ତ୍ତୀ ଶତାବ୍ଦୀ ହୋଇପାରେ । ଗ୍ରନ୍ଥ ମଧ୍ୟରେ ଉଲ୍ଲିଖିତ ମତ୍ସେନ୍ଦ୍ର, ଗୋରେଖ ଓ ଚଉରଙ୍ଗୀ ଦଶମ ବା କୌଣସି ପୂର୍ବବର୍ତ୍ତୀ ଶତାବ୍ଦୀର ସିଦ୍ଧ । ଦଶମ ଶତାବ୍ଦୀର ପରବର୍ତ୍ତୀ କୌଣସି ସିଦ୍ଧଙ୍କର ସୂଚନା ଏଥିରେ ନାହିଁ । ସେଥିପାଇଁ ଏହି ଗ୍ରନ୍ଥର ରଚନା କାଳରୂପେ ଏକାଦଶ ବା ଦ୍ୱାଦଶ ଶତାବ୍ଦୀକୁ ମଧ୍ୟ ଗ୍ରହଣ କରାଯାଇପାରେ । ଏପରି ଅବସ୍ଥାରେ ଅନ୍ୟ ନିର୍ଦ୍ଦିଷ୍ଟ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ଏକାଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟବର୍ତ୍ତୀ ସମୟକୁ **ସୀସୁବେଦ**ର ରଚନା କାଳ ରୂପେ ଗ୍ରହଣ କରିନେବା ନିରାପଦ ।

**ସାରଳା ମହାଭାରତ**ର ବେଦ ସଙ୍ଗେ କଳସା ପାଠ ପ୍ରସଙ୍ଗକୁ ଉପହାସ କରି ଯେଉଁ ବିଦଗ୍ଧ ସମାଲୋଚକବୃନ୍ଦ ଏପର୍ଯ୍ୟନ୍ତ **କଳସା ଚଉତିଶା**କୁ ସାରଳା ପୂର୍ବ-ରଚନା ରୂପେ ସ୍ୱୀକାର କରିବାକୁ ଅନିଚ୍ଛୁକ, ସେମାନେ ଆଜି ହୁଏତ ଓଡ଼ିଆ ଭାଷା ରଚିତ, ମୋଟେ ପଚିଶ ଶ୍ଳୋକ ସମ୍ବଳିତ, କୌଣସି ଅଜ୍ଞାତ କବିକୃତ **ସୀସୁବେଦ**କୁ ଆର୍ଯ୍ୟଜାତିର ଆଦିଗ୍ରନ୍ଥ ବେଦ

---

(୨୯) ଅପଭ୍ରଂଶ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ କବି । ରାହୁଲଜୀଙ୍କ ମତରେ 'ହିନ୍ଦି ସାହିତ୍ୟର ସର୍ବୋତ୍ତମ କବି' । ସମୟ ଅଷ୍ଟମ ଶତାବ୍ଦୀ । **ସୀସୁବେଦ** ସହ ସମ୍ପୃକ୍ତ କରିବାର ପ୍ରଧାନ କାରଣ ହେଉଛି ଅପଭ୍ରଂଶ ସାହିତ୍ୟର ସଂଯୋଗ ସୂତ୍ର ରକ୍ଷା କରିବାର ମନୋବୃତ୍ତି -''ସ୍ୱୟମ୍ଭୁ ସୀସୁବେଦ କହେ ଲୋଂଇ'' ।

**ସହ ସ**ମାନ ଆସନ ଦେବାକୁ କୁଣ୍ଠାବୋଧ କରିବେ । କିନ୍ତୁ ଓଡ଼ିଆ ଭାଷା ତଥା ସାହିତ୍ୟର **ସେହି ଆ**ଦିକାଳରେ **କଳସା ଚଉତିଶା, ସୀସୁବେଦ** ଓ **ଅମରକୋଷ** ପରି ରଚନା ଯେତେ **କ୍ଷୁଦ୍ର** ହେଉ ପଛେ, ସଂସ୍କୃତ ଅନଭିଜ୍ଞ ଓଡ଼ିଆ ସମାଜ ପକ୍ଷେ ଅପୂର୍ବ ପ୍ରତୀୟମାନ ହୋଇଥିବ । **ସେଥିପାଇଁ ସୀସୁବେଦର** ରଚୟିତା ସାଧାରଣ ମଣିଷ ନୁହନ୍ତି । ନିଜେ ଈଶ୍ୱର ବା ଶିବ । ପୁଣି **ସୀସୁବେଦ** କେବଳ 'ପଞ୍ଚମ ବେଦ' ନୁହେଁ , ଏହା ହେଉଛି, 'ପରମ' ଓ 'ମହାଶୂନ୍ୟ' । **ପରବର୍ତ୍ତୀ** ଯୁଗରେ ଏହି ଗ୍ରନ୍ଥ କବି ଦୃଷ୍ଟିରେ ଇନ୍ଦ୍ରଜାଲ ସଦୃଶ ପ୍ରତିଭାତ ହୋଇ କବି ମନକୁ **ମୋହିତ** କରିଛି । ତା ଫଳରେ ଯଶୋବନ୍ତ ଦାସଙ୍କ **ଲୋହିଗୀତା** ଗ୍ରନ୍ଥରେ **ସୀସୁବେଦର** ବାଣୀ **ସହସ୍ର** ମୂର୍ତ୍ତି ଧରି, ପୃଥିବୀର ପରିସୀମା ତ୍ୟାଗ କରି ଶୂନ୍ୟ ପଥରେ ବିଭିନ୍ନ ରଙ୍ଗ ରଞ୍ଜିତ **ହୋଇ** ଭ୍ରମଣ କରିଛି । ଶ୍ୱେତ,ରଙ୍ଗ, କଳା,ଧବଳ ପ୍ରଭୃତି ବିଭିନ୍ନ ରଙ୍ଗ ତା'ରି ଠାରୁ ପ୍ରକାଶ **ପାଉଛି** । ସେ ନୀଳବର୍ଣ୍ଣ, ଚତୁର୍ଭୁଜ । ଶୂନ୍ୟ ପରମ ଓ ବିଷ୍ଣୁ । ଦଶ ଅବତାର ତା'ରି ଅଙ୍ଗରୁ **ଜାତ** ହେଉଛନ୍ତି । ପ୍ରଳୟ କାଳରେ ତା'ର ନାଶ ନାହିଁ । ଚାରିବେଦ ଅଷ୍ଟାଦଶ ପୁରାଣ ସମସ୍ତେ **ତା'ରି** ହୃଦରେ ଲୀନ ହୋଇ ଯାଉଛନ୍ତି । କବିଙ୍କ ଭାଷାରେ-

ଯେମନ୍ତ ହୋଇ ସୀସୁବେଦ ବାଣୀ
ସହସ୍ର ମୂର୍ତ୍ତି ଧରି ଶୂନ୍ୟେ ଭ୍ରମି,
ନୀଳବର୍ଣ୍ଣ ରୂପ ଶୋହେ ତାହାର
ଚତୁର୍ଭୁଜ ହୋଇ ବିଜେ ଶୂନ୍ୟର ।
ଶ୍ୱେତ, ରଙ୍ଗ, କଳା, ଧବଳ ଦିଶେ
କୁଙ୍କୁମ କୁସୁମ ଶୁକ୍ଳ ପ୍ରକାଶେ,
ଶ୍ୟାମ କୃଷ୍ଣ ମୂର୍ତ୍ତି ସକାସ ବର୍ଣ୍ଣ
ନ ହୋଇ ବର୍ଣ୍ଣ ଅବର୍ଣ୍ଣ ଶୋଭନ ।
ଶୂନ୍ୟ ପରମ ବିଷ୍ଣୁ ଅଟେ ସେହି
ଦଶ ଅବତାର ସେ ଅଙ୍ଗ ହୋଇ
ଯଦି ସେ ରୂପ ନାମ ପରକାଶ
ପୃଥ ପ୍ରଚଳ ଗଲେ ନୋହଇ ନାଶ ।
ଚାରିବେଦ ଅଷ୍ଟାଦଶ ପୁରାଣ
ସମସ୍ତେ ହୋ ଲୀନ ତାହା ହୃଦେଣ ।

ଏ ସବୁ ଉକ୍ତିରେ ସତ୍ୟତା ଯେତେ ନାହି ତା'ଠାରୁ ବେଶୀ ପ୍ରକାଶ ପାଇଛି ବେଦ ପ୍ରତି ସମସାମୟିକ ସାମାଜିକ ମନୋଭାବର ସଙ୍କେତ । ପଞ୍ଚସଖା ଯୁଗରେ କଥିତ

ସଂସ୍କୃତାଭିମାନୀ ପଣ୍ଡିତମାନଙ୍କର ଓଡ଼ିଆ କାବ୍ୟ, କବିତା ପ୍ରତି ଅବଜ୍ଞା କାହାକୁ ଅବିଦିତ ନୁହେଁ । ମନେହୁଏ, ତା'ରି ପ୍ରତିସ୍ପର୍ଦ୍ଧୀ ସ୍ୱରୂପ ଓଡ଼ିଆ ଆଦି କାବ୍ୟମାଳାର ଅନ୍ୟତମ ଗ୍ରନ୍ଥ ସୀସୁବେଦକୁ ଚାରିବେଦ ଓ ଅଷ୍ଟାଦଶ ପୁରାଣର ମୂଳ କହିବାକୁ ଓଡ଼ିଆ କବି କୁଣ୍ଠାବୋଧ କରି ନାହିଁ ।

## ବେଦର ଭାରତ ପର୍ଯ୍ୟଟନ

କଳେବର ଦୃଷ୍ଟିରୁ ସୀସୁବେଦ ଅତି କ୍ଷୁଦ୍ର ହେଲେ ହେଁ ବହୁ ବିପୁଳକାୟ ଗ୍ରନ୍ଥ ଅପେକ୍ଷା ଏହା ଅଧିକ ମହତ୍ତ୍ୱପୂର୍ଣ୍ଣ । ଏଥିରେ ମୋଟ ପଚିଶଟି ଶ୍ଳୋକ । ଅଥଚ ଏହି ପଚିଶିଟି ଶ୍ଳୋକ ମଧ୍ୟରେ ଓଡ଼ିଆ ଭାଷା ତଥା ସାହିତ୍ୟର ଆଦି ଇତିହାସ ନିହିତ । ସେତିକି ନୁହେଁ, ନାଥ ଧର୍ମର ଏହା ଗୋଟିଏ ବିଶିଷ୍ଟ ଗ୍ରନ୍ଥ । ସେଥିପାଇଁ ସୀସୁବେଦର ପ୍ରତ୍ୟେକ ଶବ୍ଦ, ପ୍ରତ୍ୟେକ ପଂକ୍ତି, ପ୍ରତ୍ୟେକ ଛନ୍ଦ ଓ ପ୍ରତ୍ୟେକ ବିଚାର ମଣିପରି ମୂଲ୍ୟବାନ ।

ଓଡ଼ିଆ ଭାଷାର ଆଦିକାଳରେ ରଚିତ ସୀସୁବେଦ ଏକ ଅଭୂତପୂର୍ବ ଆବିଷ୍କାର । ଏହା ପୂର୍ବରୁ ରଚିତ ହୋଇଥିବା କୌଣସି ଗ୍ରନ୍ଥର ସୂଚନା ଏପର୍ଯ୍ୟନ୍ତ ମିଳି ନାହିଁ ।

ଚର୍ଯ୍ୟାପଦରୁ ଓଡ଼ିଆ ଭାଷାର ପ୍ରାଚୀନ ନିଦର୍ଶନ ମିଳୁଥିଲେ ହେଁ ଏହାକୁ କେବଳ ଓଡ଼ିଆ କହିବା ଅନୁଚିତ । ସେ କାଳରେ ଏହା ହେଉଛି ଭାରତର ପୂର୍ବାଞ୍ଚଳର ଯୋଗାଯୋଗ ଭାଷା । ଏଥିରୁ ଓଡ଼ିଆ ପରି ବଙ୍ଗଳା, ଆସାମୀ ମୈଥିଳୀ ଓ ମାଗଧୀ ଭାଷାର ଆଦିରୂପ ସମାଲୋଚକମାନେ ଦେଖିଛନ୍ତି । ଓଡ଼ିଆ ଭାଷାର ଆଦିକାଳକୁ ପ୍ରକାଶ କରୁଥିବା ଅନ୍ୟ ଗୋଟିଏ ଉପାଦାନ ହେଉଛି, ଶିଳାଲେଖ । ପଞ୍ଚଦଶ ଶତାବ୍ଦୀ ଅର୍ଥାତ୍ ସାରଳାଦାସଙ୍କ ପୂର୍ବରୁ ଓଡ଼ିଶାରେ ବହୁ ଓଡ଼ିଆ ଶିଳାଲେଖ ମିଳିଛି । ସେ ସବୁକୁ ଆଲୋଚନା କରି ଓଡ଼ିଆ ଭାଷାର ସୃଷ୍ଟି ଓ ବିକାଶର ଗତି ନିର୍ଣ୍ଣୟ କରିବାକୁ ସମାଲୋଚକମାନେ ଚେଷ୍ଟା କରିଛନ୍ତି, କିନ୍ତୁ ଏ କଥା ନିର୍ଧାର୍ଯ୍ୟ ଯେ ଶିଳାଲେଖ ସାହିତ୍ୟିକ ରଚନା ନୁହେଁ । ଏଥିରୁ ମିଳୁଥିବା ଭାଷାର ନମୁନା ବହୁ ଦୃଷ୍ଟିରୁ ଅପୂର୍ଣ୍ଣ । ସାରଳା ମହାଭାରତ ପରି ଜୀବନ୍ତ ଓ ବଳିଷ୍ଠ ରଚନା ସୃଷ୍ଟି କରିବା ପାଇଁ ଯେଉଁ ସୁଦୃଢ଼ ମୂଳଭିତ୍ତି ଆବଶ୍ୟକ ତାହା ଶିଳାଲେଖରେ ନାହିଁ । ସୀସୁବେଦ ଓ ଆଉ କେତେକ କ୍ଷୁଦ୍ର ରଚନା ବ୍ୟତୀତ୍ ସେହି ଯୁଗର ପ୍ରତିନିଧିତ୍ୱ କରିବା ପାଇଁ ବୋଧହୁଏ ଆଉ କେହି ବନ୍ଧୁ ନାହାନ୍ତି ।

ସୀସୁବେଦର ରଚନା ଓଡ଼ିଆଜାତିକୁ ନୂଆ ଶକ୍ତି ଦିଏ । କଥିତ ଭାଷାରେ ନାଥଧର୍ମର ନିଗୂଢ଼ ତତ୍ତ୍ୱ ପ୍ରକାଶ କରି ଓଡ଼ିଆ ଜାତି ନିଜ ଭାଷାର ପ୍ରକାଶନ ଶକ୍ତି ସମ୍ବନ୍ଧରେ ସଜାଗ ହୁଏ । ଅତୀତ କାଳରୁ ଚଳି ଆସୁଥିବା ସଂସ୍କୃତ ଭାଷାର ମୋହ ତୁଟିଯାଏ ।ସୀସୁବେଦର ଲେଖକ ତାଙ୍କର ଏହି ଉଦ୍ୟମ ପାଇଁ ଯୁଗ ଯୁଗାନ୍ତରରୁ ଓଡ଼ିଆ କବିମାନଙ୍କରଦ୍ୱାରା ଅଭିନନ୍ଦିତ ହୋଇ ଆସିଛନ୍ତି । ସାରଳା ଦାସଙ୍କଠାରୁ ଆରମ୍ଭ କରି ଓଡ଼ିଶାର ପ୍ରତ୍ୟେକ ବ୍ରହ୍ମଜ୍ଞାନୀ, ସାଧକ ନିଜ

**ଗ୍ରନ୍ଥରେ ସୀସୁବେଦର** ଉଲ୍ଲେଖକରି ଓଡ଼ିଆ **ଭାଷାର** ଆଦିଗ୍ରନ୍ଥକୁ ସମ୍ମାନିତ କରିଛନ୍ତି । ସାରଳା **ଦାସ ନିଜ** ମହାଭାରତରେ **ସୀସୁବେଦ**କୁ ହିନ୍ଦୁଧର୍ମର ପ୍ରସିଦ୍ଧ ଚାରି ଉପବେଦ, ଆୟୁ, ଜ୍ୟୋତି, **ଧନୁ, ଗନ୍ଧର୍ବ** ସହ ଗଣନା କରି ତଥା ଏହାକୁ **ପଞ୍ଚମ** ବେଦର ସମ୍ମାନ ଦେଇ ଏହାର ମହତ୍ତ୍ୱକୁ **ଆହୁରି ବୃଦ୍ଧି** କରିଛନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ **ସୀସୁବେଦ** ପରି ମାନ୍ୟତା ଆଉ କୌଣସି **ଗ୍ରନ୍ଥ** ବା **କବି**ଙ୍କୁ ମିଳି ନାହିଁ । ସାରଳା ଦାସ, ବଳରାମ ଦାସ ବା ଜଗନ୍ନାଥ ଦାସଙ୍କ ପରି **ଓଡ଼ିଆ** ସାହିତ୍ୟର ପ୍ରସିଦ୍ଧ କବିମାନଙ୍କୁ ନିଜ ଗ୍ରନ୍ଥରେ ଉଲ୍ଲେଖ କରିବା ପାଇଁ ପୀତାମ୍ବର ଦାସ, **ଦ୍ୱାରକା ଦାସ** ତଥା ଦିବାକର ଦାସଙ୍କ ପରି ଆଉ ଜଣେ ବା ଦୁଇଜଣ ଲେଖକ ହୁଏତ ମିଳିବେ, **କିନ୍ତୁ ସୀସୁବେଦର** ସ୍ମରଣ କରୁଥିବା ଲେଖକଙ୍କର ସଂଖ୍ୟା ଅକଳିତ ।

**ସୀସୁବେଦ** ଯେ କେବଳ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ ତାହା ନୁହେଁ, ଏହା **ଭାରତୀୟ** ନାଥ-ସାହିତ୍ୟର ଏକ ଅତୁଳନୀୟ ଗ୍ରନ୍ଥ । ଓଡ଼ିଶାର ସୀମା ଅତିକ୍ରମ କରି ଯେଉଁ କେତୋଟି ଗ୍ରନ୍ଥ ଓଡ଼ିଆ ଦାର୍ଶନିକର କଣ୍ଠସ୍ୱରକୁ ଭାରତର ଅନ୍ୟ ପ୍ରାନ୍ତରେ ପ୍ରତିଧ୍ୱନିତ **କରିଥିଲେ, ସୀସୁବେଦ** ସେମାନଙ୍କ ମଧ୍ୟରେ ଅନ୍ୟତମ । ଡକ୍ଟର ପୀତାମ୍ବର ଦତ୍ତ ବଡ଼ଥ୍ୱାଲଙ୍କ **ଦ୍ୱାରା** ସମ୍ପାଦିତ **ଗୋରଖ ବାଣୀ**ରେ **ସୀସୁବେଦର** କେତୋଟି ପଂକ୍ତି ଅଳ୍ପ ପରିବର୍ତ୍ତିତ ହୋଇ ମିଳିଥାଏ । **ସୀସୁବେଦ**ରେ ଅଛି -

ମର ମର ପଣ୍ଡିତେ ମରଣ ଯେ ମିଠା
ଯେବଣ ମରଣକୁ ଗୋରେଖ ଦିଷ୍ଟ୍ୱର୍ବା
ମରନ୍ତେଣ ଜୀବ ଯିବାକୁ ଯହିଁକି
ଜୀଉଁ ଜୀଉଁ ଜୀବ ସମର୍ପ ତହିଁକି ।

**ଗୋରଖ ବାଣୀ**ର ପଦ ହେଉଛି -

ମରୌ ଓ୍ୱେ ଯୋଗୀ ମରୌ
ମରୌ ମରଣ ହୈ ମିଠା,
ତିସ ମରଣୀଂ ମରୌ ଜିସ
ମରଣୈଂ ଗୋରଖ ମରି ଦୀଠା ।

ଏହା ବ୍ୟତୀତ 'ସତି ସତି ଭାଷନ୍ତ ଶ୍ରୀ ଗୋରଖ ରାଇ', 'ସତି ସତି ଭାଷନ୍ତ ଶ୍ରୀ **ଗୋରଖନାଥ**' ଓ 'ଆପ ପରଚେ ଗୁରୁମୁଖୀ ଚିହ୍ନ' ପ୍ରଭୃତି ପଂକ୍ତି ଉଭୟ **ସୀସୁବେଦ** ଓ **ଗୋରଖ ବାଣୀ**ରେ ଦେଖିବାକୁ ମିଳେ ।

**ସୀସୁବେଦ**ର ପଂକ୍ତି ବ୍ୟତୀତ **ଗୋରଖ ବାଣୀ**ରେ ଆହୁରି ବହୁ ପଂକ୍ତି ଅଛି ଯାହାର ଭାଷା ଓଡ଼ିଆ (୩୦) ଭାବ ଓ ବିଚାର ଦୃଷ୍ଟିରୁ ଏହିସବୁ ପଂକ୍ତି **ସୀସୁବେଦ**ର ସମାନଧର୍ମୀ । **ସୀସୁବେଦ** ସଦୃଶ ଏ ସବୁ ପଂକ୍ତି ମଧ୍ୟ ପ୍ରାଚୀନ । ବହୁକାଳଧରି ଓଡ଼ିଶାରୁ ବାହାରେ ରହିଥିବା ଫଳରେ ଏଥିରେ ଅନ୍ୟ ଭାଷାର ସୂଚନା ମିଳିବା ସ୍ୱାଭାବିକ ।

ନିମ୍ନରେ ସେଥିରୁ କେତୋଟି ପଂକ୍ତି ଦିଆଯାଉଛି -

୧ । ଅଦେଖି ଦେଖିବା ଦେଖି ବିଚାରିବା,
ଅଦିସିଟି (ଅଦୃଷ୍ଟ) ରାଖିବା ଚିୟା,
ପାତାଳ କି ଗଙ୍ଗା ବ୍ରହ୍ମଣ୍ଡ ଚଢ଼ାଇବା,
ତହିଁ ବିମଳ ବିମଳ ଡାଳ ପିୟା ।

୨। ହସିବା ଖେଳିବା ରହିବା ରଙ୍ଗ,
କାମ କ୍ରୋଧ ନ କରିବା ସଙ୍ଗ,
ହସିବା ଖେଳିବା ଗାଇବା ଗୀତ,
ଦୃଢ଼ କରି ରାଖି ଆପନାଂ ଚିତ ।

୩। ଗୋରଖ କହେ ସୁଣହୁରେ ଅବଧୁ,
ଜଗମୈ ଏସୈ ରହଣାଂ,
ଆଂଖେ ଦେଖିବା କାଂନୈ ସୁଣିବା,
ମୁଖଥୈ କଚ୍ଛୁ ନ କହଣାଂ ।

୪। ଦୃଷ୍ଟି ଅଗ୍ରେ ଦୃଷ୍ଟି ଲୁକାଇବା,
ମୁରତି (ଶ୍ରୁତି) ଲୁକାଇବା କାନଂ ।
ନାସିକା ଅଗ୍ରେ ପତନ ଲୁକାଇବା,
ତବ ରହିଗୟା ପଦଂ ନିରିବାଂନା ।

୫। ହସିବା ଖେଳିବା ଧରିବା ଧ୍ୟାନ,
ଅହନିସି କଥିବା ବ୍ରହ୍ମ ଗିୟାଂନ,
ହସେ ଖେଳେ ନ କରେ ମନ ଭଙ୍ଗ,
ତେ ନିହଚଳ ସଦା ନାଥ କୈ ସଙ୍ଗ ।

---

(୩୦) **ଗୋରଖବାଣୀ**ର ଆଲୋଚକମାନେ **ଗୋରଖବାଣୀ**ରେ ବଙ୍ଗଳା **ଗୁଜୁରାଟୀ,** ନେପାଳୀ ଓ ଅନ୍ୟାନ୍ୟ ବହୁ ଭାରତୀୟ ଭାଷାର ସନ୍ଧାନ କରିଛନ୍ତି ।

୬। ହବକି ନ ବୋଲିବା, ଠବକି ନ ଚାଲିବା
ଧିରୈ ଧରିବା ପାୱାଂ,
ଗରବ ନ କରିବା ସହଜୈ ରହିବା
ଭଣତ ଗୋରଖ ରାୱାଂ,

୭। ଧାୟେ ନ ଖାଇବା ଭୁଖେ ନ ମରିବା,
ଅହଁନିସି ଲେବା ବ୍ରହ୍ମ ଅଗନି କା ଭେଦ।
ହଂ ନ କରିବା ପଡ଼ୟା ନ ରହିବା,
ୟୁଁ ବୋଲ୍ୟା ଗୋରଖ ଦେବ।

୮। ପଢ଼ି ଦେଖି ପଣ୍ଡିତା ରହି ଦେଖି ସାରଂ,
ଅପଣିଂ କରଣିଂ ଉତରିବା ପାରଂ।
ବଦନ୍ତ ଗୋରଖନାଥ କହି ଧୂସାକ୍ଷୀ,
ଘଟି ଘଟି ଦୀପକ (ବଲେ) ଖଣି ପସୁ
ନ (ପେଖେ) ଆକ୍ଷିଂ।

୯। ମନ ମୈଂ ରହିଣା ଭେଦ ନ କହିଣାଂ
ବୋଲିବା ଅଂମୃତ ବାଂଣୀ,
ଅଗିଲା ଅଗନି ହୋଇବା
ଅବଧୂ ତୌ ଆପଣ ହୋଇବା ପାଣି।

୧୦। ଉନମନି ରହିବା ଭେଦ ନ କହିବା
ପିୟବା ନୀଂଝର ପାଂଣୀ,
ଲଙ୍କା ଛାଡ଼ି ପଲଙ୍କା ଜାଇବା
ତବ ଗୁରୁମୁଖ ଲେବା ବାଣୀ।

୧୧। ବିରଳା ଜାଣନ୍ତି ଭେଦାନି ଭେଦ
ବିରଳା ଜାଣନ୍ତି ଦୋଇ ପକ୍ଷିଛେଦ।
ବିରଳା ଜାଣନ୍ତି ଅକଥଂ କାହାଁଣୀ,
ବିରଳା ଜାଣନ୍ତି ସୁଧିବୁଧି କୀ ବାଣୀଂ।

ଡ଼କ୍ଟର ବଡ଼ଥ୍ୱାଲ ଗୋରଖବାଣୀର ରଚନା କାଳ ଅନୁମାନତଃ ଏକାଦଶ ଶତାବ୍ଦୀ ସ୍ଥିର କରିଛନ୍ତି । ସେ କହନ୍ତି- "ନାଥ ପରମ୍ପରାରେ ଗୋରଖବାଣୀର କର୍ତ୍ତା ପ୍ରସିଦ୍ଧ ଗୋରଖନାଥଙ୍କଠାରୁ ଭିନ୍ନ ନୁହନ୍ତି । ମୋ ମତରେ ଗୋରଖନାଥ ଏକାଦଶ ଶତାବ୍ଦୀ(ବିକ୍ରମ)ରେ ଜୀବିତ ଥିଲେ । ଗୋରଖବାଣୀର ପଦମାନ ଯେଉଁ ଭାବରେ ଉପଲବ୍ଧ ହୋଇଛି, ଠିକ ସେହି ରୂପରେ ସେ ସମୟରେ ଥିଲା ଏହା କୁହାଯାଇ ପାରିବ ନାହିଁ । ପରନ୍ତୁ ଏଥିରେ ମଧ୍ୟ ପ୍ରାଚୀନତାର ପ୍ରମାଣ ବିଦ୍ୟମାନ ଅଛି । ସେଥିରୁ କୁହାଯାଇପାରେ ଯେ ଏ ସବୁ ପଦର ମୂଳୋଦ୍ଭବ ଏକାଦଶ ଶତାବ୍ଦୀରେ ହୋଇଥିବା ସମ୍ଭବ "(୩୧) । ଡ଼କ୍ଟର ରାଙ୍ଗେୟ ରାଘବ **ଗୋରଖବାଣୀ**ର ଭାଷାକୁ ଅନୁମାନତଃ ଚତୁର୍ଦ୍ଦଶ ଶତାବ୍ଦୀର କହନ୍ତି(୩୨) । ତାଙ୍କ ମତରେ **ଗୋରଖବାଣୀ** ରେ ଇସ୍‌ଲାମ ଧର୍ମ ତଥା ବହୁ ପରବର୍ତ୍ତୀ ହିନ୍ଦୁ ସଂପ୍ରଦାୟର ପ୍ରଭାବ, ପରବର୍ତ୍ତୀ ଯୁଗର ଲେଖକ ତଥା ଦେବତାଙ୍କର ଉଲ୍ଲେଖିତ ମଛେନ୍ଦ୍ର ଓ ଗୋରଖନାଥଙ୍କ ସଂସ୍କୃତ ଗ୍ରନ୍ଥରେ ଥିବା ନାଥଧର୍ମର ମତଠାରୁ **ଗୋରଖବାଣୀ**ରେ ପ୍ରତିପାଦିତ ମତରେ ଭିନ୍ନତା, ଅଭିବ୍ୟକ୍ତିର ଦୃଷ୍ଟିକୋଣରେ ପାର୍ଥକ୍ୟ, ତଥା ବ୍ରାହ୍ମଣବାଦର ପ୍ରଭାବ ରହିଛି । କାଳଗତିରେ **ଗୋରଖବାଣୀ**ର ପଦସଂଖ୍ୟା ବହୁ ପ୍ରଭାବ ସମନ୍ୱିତ ହୋଇ ବୃଦ୍ଧି ପାଇଥିବା ନିସନ୍ଦେହ, କିନ୍ତୁ ଏଥିରେ ଯେ କେତୋଟି ମୂଳ ପଦର ଅବଶିଷ୍ଟ ଅଛି, ଏ କଥା ମନା କରି ହୁଏ ନାହିଁ । **ଗୋରଖବାଣୀ**ରେ **ସୀସୁବେଦ**ର ପଦ ମିଳୁଥିବାରୁ ଏହାର ରଚନା ଚତୁର୍ଦ୍ଦଶ ଶତାବ୍ଦୀର ପୂର୍ବେ ହୋଇଥିବା ସମ୍ଭବ । ପୁଣି ଡ଼କ୍ଟର ରାଙ୍ଗେୟ ରାଘବଙ୍କ ଦ୍ୱାରା ସ୍ଥିର ହୋଇଥିବା ପ୍ରଭାବମାନଙ୍କ ମଧ୍ୟରୁ କୌଣସିଟିର ସୂଚନା **ସୀସୁବେଦ**ରେ ନଥିବା ଯୋଗୁଁ ଏହି ଗ୍ରନ୍ଥ **ଗୋରଖବାଣୀ**ର ବହୁ ପୂର୍ବରୁ ଅର୍ଥାତ୍ ଏକାଦଶ ଶତାବ୍ଦୀ ବା ଦ୍ୱାଦଶ ଶତାବ୍ଦୀରେ ରଚିତ ହୋଇଥିବା ସମ୍ଭବ । **ଗୋରଖବାଣୀ**ରୁ ମିଳୁଥିବା ଅନ୍ୟ ଓଡ଼ିଆ ପଦସବୁ **ସୀସୁବେଦ**ର ସମକାଳୀନ ହୋଇଥିବା ବିଶେଷ ସମ୍ଭବ ।

**ସୀସୁବେଦ**ରେ ରଚୟିତାଙ୍କ ନାଁ ନାହିଁ । ତିଗିରିଆରୁ ଡ଼କ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଦ୍ୱାରା ସଂଗୃହୀତ ଓ ବିଶ୍ୱଭାରତୀରେ ସଂରକ୍ଷିତ **ସୀସୁବେଦ**ର ଏକ ଅନୁଲିପିର ଶେଷରେ 'ଶ୍ରୀଗୋରେଖନାଥ ଙ୍କ ସୀସୁବେଦ ସମାପ୍ତ' ଲେଖାଅଛି । **ଗୋରଖବାଣୀ**ରୁ ମଧ୍ୟ ଜଣାଯାଏ ଯେ ଗୋରଖନାଥ ଏହାର ରଚୟିତା । ପଂକ୍ତିଟି ହେଉଛି-

ପନ୍ଥ ବିନା ଚଲିବା ଅଗନି ବିନା ଜଳିବା
ଅନିଲ ତୃଷା ଜହଟିୟା
ସଂସବେଦ ଶ୍ରୀ (ଗୁରୁ) ଗୋରଖ (ନାଥ) କହିୟା
ବୁଝିଲ୍ୟୋ ପଣ୍ଡିତ ପଢ଼ିୟା ।

(୩୧) **ଗୋରଖବାଣୀ** ଭୂମିକା ପୃ-୯

(୩୨) **ଗୋରଖନାଥ ଅରର ଉନ୍‌କା ଯୁଗ** ପୃ-୧୯୩

ଅନ୍ୟ ଗୋଟିଏ ପଂକ୍ତିରେ 'ପଢ଼ିଲେ ସଂସବେଦ' ଲେଖାଅଛି । ଉଭୟ ପଂକ୍ତିରେ 'ସଂସବେଦ ପଢ଼ିବା' ଲେଖାଥିବାରୁ ଏହା ନିଶ୍ଚିତଭାବେ ଗୋଟିଏ ଗ୍ରନ୍ଥ ଓ ଏହା ଗୋରଖନାଥଙ୍କ ରଚନା । ଏସବୁ ସୂଚନା ସତ୍ତ୍ୱେ ସଂସବେଦର ଆଧ୍ୟାତ୍ମିକ ଅର୍ଥ ଗ୍ରହଣ କରାଯାଇଛି । ଡ଼କ୍ଟର ବଡ଼ଥ୍ୱାଲଙ୍କ ମତରେ ସଂସବେଦର ଅର୍ଥ ହେଉଛି ସୁସଂବେଦ୍ୟ । ସଂସ୍କୃତରେ ଏହାର ଅନୁବାଦ 'ସୁକ୍ଷମ ବେଦ' ହୋଇଛି । ଗୋରଖନାଥଙ୍କର 'ସଂସବେଦ' ଶୀର୍ଷକ କୌଣସି ଗ୍ରନ୍ଥ ଏ ପର୍ଯ୍ୟନ୍ତ ମିଳିନାହିଁ । ଅନୁମିତ ହୁଏ 'ସଂସବେଦ' ଓ **ସୀସୁବେଦ** ଅଭିନ୍ନ । **ସୀସୁବେଦର** ସଂସ୍କୃତି ଓ ମାନ୍ୟତା ଯୋଗୁଁ ପରବର୍ତ୍ତୀ କାଳରେ ଏହା କେବଳ ଗୋଟିଏ ଗ୍ରନ୍ଥର ନାମବିଶେଷ ନ ହୋଇ, ନାଥ ଧର୍ମର ଗୋଟିଏ ବିଶେଷ ଶବ୍ଦ ରୂପେ ପ୍ରଯୁକ୍ତ ହୋଇଛି । **ସୀସୁବେଦର** ପ୍ରାରମ୍ଭରେ ଏହାର ସୂଚନା ମିଳେ- ''ଦୁଇ କର୍ଣ୍ଣରେ ତୁଳା ଦେଇ ଭଲକରି ବୁଝିବ । ରାତ୍ରି ପାହାନ୍ତି ଉଠି ତଳେ କରିବ । ଯେବଣ ଧ୍ୱନି ଶୁଭିବ ଆକାଶରେ ମଇଂଧ, ଯେହାକୁ ସୀସୁବେଦ ବୋଲି ।''

ବିଭିନ୍ନ ଉଲ୍ଲେଖ ଓ ପ୍ରଚଳିତ ପରମ୍ପରାକୁ ବିଶ୍ୱାସ କଲେ ନାଥ ଧର୍ମର ଅନ୍ୟତମ ବିଶିଷ୍ଟ ଗୁରୁ ଗୋରଖନାଥ ହିଁ **ସୀସୁବେଦର** ରଚୟିତା; କିନ୍ତୁ **ସୀସୁବେଦର** କେତୋଟି ପଂକ୍ତିରେ ଗୋରଖନାଥଙ୍କୁ ଉଦାହରଣରୂପେ ଉପସ୍ଥାପିତ କରାଯାଇଥିବାରୁ ଏଥିରେ ସନ୍ଦେହ ଜାତ ହୁଏ । ଗୋରଖନାଥ ନିଜେ ନିଜ ଗ୍ରନ୍ଥରେ ନିଜକୁ ଉଦାହରଣ ଦେବା ଅସମିଚୀନ ତଥା ଅସ୍ୱାଭାବିକ । ପଂକ୍ତି କେତୋଟି ହେଉଛି -

୧। ମରମର ପଣ୍ଡିତେ ମରଣ ଯେ ମିଠା,
ଯେବଣ ମରଣକୁ ଗୋରେଖ ଦଷ୍ଟା ।

୨। ସତି ସତି ଭାଷନ୍ତି ଗୋରେଖ ରାୟେ,

୩। ଗୋରେଖଙ୍କର ପରମ ଶୂନ୍ୟଟିଏ ।

**ଗୋରକ୍ଷ ବାଣୀ**ର ରଚୟିତାଙ୍କ ସମ୍ବନ୍ଧରେ ଆଲୋଚନା କରିବା ସମୟରେ ଡ଼କ୍ଟର ରାଙ୍ଗେୟ ରାଘବ ସମାନ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । ତାଙ୍କ ମତରେ **ଗୋରକ୍ଷ ବାଣୀ**ରେ ଗୋରକ୍ଷ ନାଥଙ୍କ ନାମ ପୂର୍ବରୁ ଶ୍ରୀ ଓ ଶ୍ରୀଗୁରୁ ଥିବା ତଥା ଗୋରଖନାଥଙ୍କୁ ଉଦାହରଣ ରୂପେ ଦିଆଯାଇଥିବା ପଦମାନ ଅପ୍ରମାଣିତ ଓ ପରବର୍ତ୍ତୀ କାଳର ଗୁରୁଭକ୍ତି ଆବେଗରେ ଆସି ପରବର୍ତ୍ତୀ କାଳର କୌଣସି ଶିଷ୍ୟ ଏହି ସବୁ ପଂକ୍ତି ରଚନା କରି ଗୋରଖଙ୍କ ମୂଳ ପଦ ସହ ମିଶେଇ ସମାଜରେ ଚଳେଇଥିବା ସମ୍ଭବ । ଡ଼କ୍ଟର ରାଙ୍ଗେୟ ରାଘବଙ୍କ ମତକୁ ସ୍ୱୀକାର କଲେ **ସୀସୁବେଦ**ରେ ମୋଟେ ତିନୋଟି ପ୍ରକ୍ଷେପ ଓ ଅବଶିଷ୍ଟ **ସୀସୁବେଦ** ଗୋରଖନାଥଙ୍କର । ଭାରତର ବିଭିନ୍ନ ଭାଷାରେ ଗୋରଖନାଥଙ୍କର ରଚନା ମିଳୁଥିବାରୁ ସେ କେଉଁ ଭାଷାରେ ପ୍ରଥମେ ଲେଖିଥିଲେ ବା ସବୁ ଭାଷା ସମାନଭାବରେ ଜାଣିଥିଲେ କହିବା କଷ୍ଟ । ତେବେ ବଙ୍ଗଳା ଓ ହିନ୍ଦୀ ସାହିତ୍ୟ ପରି ଓଡ଼ିଆ ସାହିତ୍ୟରେ ଆଦି ଲେଖକଙ୍କର ସମ୍ମାନ ଗୋରଖନାଥଙ୍କୁ

ଦିଆଯାଇଛି । ତେଣୁ **ସୀସୁବେଦର** ସୁସମ୍ପାଦନା ଓଡ଼ିଆ ଭାଷା ତଥା ସାହିତ୍ୟର ଆଦିକାଳକୁ **ସ୍ପଷ୍ଟ** କରିବା ସଙ୍ଗେ ସଙ୍ଗେ ଭାରତରେ ନାଥ ଧର୍ମର ଇତିହାସ ସଙ୍କଳନ କରିବାରେ ସାହାଯ୍ୟ କରିବ ।

**ସୀସୁବେଦ**ର ସଂପାଦନା କଲାବେଳେ ସଂପାଦକ କେତୋଟି ଅସୁବିଧାର ସମ୍ମୁଖୀନ ହେବା ସ୍ୱାଭାବିକ । ମୂଳ **ସୀସୁବେଦ** ବା ତାହାର ଅବିକଳ ଅନୁଲିପି ହୁଏତ ଆଉ ନାହିଁ । ନକଲକାରମାନଙ୍କ ହାତରେ ଏହା ବହୁଭାବରେ ପରିବର୍ତ୍ତିତ ହୋଇଥିବା ସମ୍ଭବ । ଏପରିକି **ସୀସୁବେଦର** ଏକ ଅନୁଲିପିରେ ବୈଷ୍ଣବ ଧର୍ମ ତତ୍ତ୍ୱ ସମ୍ୱଳିତ ପଂକ୍ତି ସବୁ ଦେଖିବାକୁ ମିଳୁଥିବା ବେଳେ ଆଉ ଗୋଟିଏ ଅନୁଲିପି ଶୈବଧର୍ମ ଦ୍ୱାରା ପ୍ରଭାବିତ ।

ଏପରି ବ୍ୟତିକ୍ରମ ହୁଏତ ଆହୁରି ମିଳିବ; କିନ୍ତୁ **ସୀସୁବେଦ** ଯେ ବଞ୍ଚିଛି ଏହା କେବଳ ନକଲକାରମାନଙ୍କ ଯୋଗୁଁ । ଓଡ଼ିଆ ସାହିତ୍ୟର ଅଗ୍ରଗତିରେ ଭାଷା ବଦଳିଛି । **ସୀସୁବେଦର** ଆଦିରୂପ ପରବର୍ତ୍ତୀ ଯୁଗରେ ଦୁର୍ବୋଧ ହୋଇଯାଇଛି । ଏହାକୁ ଯୁଗୋପଯୋଗୀ କରି ପ୍ରକାଶ କରିବା ପାଇଁ ନକଲକାରମାନେ ବହୁ ଉପାୟ ଅବଲମ୍ୱନ କରିଥିବେ । ମୂଳ ଶ୍ଳୋକର ଅର୍ଥ ବା ବାଖ୍ୟା ଲେଖି ଅପ୍ରଚଳିତ ଶବ୍ଦକୁ ପ୍ରଚଳିତ ଶବ୍ଦଦ୍ୱାରା ପରିବର୍ତ୍ତିତ କରି, କଷ୍ଟ ଶବ୍ଦ ସ୍ଥାନରେ ସମାନାର୍ଥକ ସହଜ ଶବ୍ଦ ରଖି ଓ ପଢ଼ି ପାରୁ ନ ଥିବା ବା ପଢ଼ି ବୁଝିପାରୁ ନ ଥିବା ଅକ୍ଷର ତଥା ଶବ୍ଦ ସ୍ଥାନରେ ସହଜ ଶବ୍ଦସବୁ ଦେବାର ଚେଷ୍ଟା ହୋଇଛି ।

କେତୋଟି ଉଦାହରଣ :

୧ । (କ) ପଛି ଛେଦିଲେ, (ଖ) ବେନି ପକ୍ଷୀ ଖେଦିଲେ (ଘ) ବେନି ପକ୍ଷୀ ଛିଡ଼ିଲା ଗଗନେ କମ୍ପାଇ, (ଙ) ପକ୍ଷୀ ଛେଦିଲେ ହସ୍ତୀପୟେ । ମିଳୁଥିବା ଦୁଇପ୍ରକାର ପାଠ ମଧ୍ୟରୁ 'ବେନି-ପକ୍ଷୀ' ପାଠ ଚାରୋଟି ଅନୁଲିପିରେ ମିଳୁଥିବାରୁ ଏହା ହିଁ ସମ୍ଭାବ୍ୟ ପାଠ ହେବାର କଥା । ପୁଣି 'ପକ୍ଷୀ' ଶବ୍ଦ ନାଥ ସାହିତ୍ୟର ପ୍ରଚଳିତ ଶବ୍ଦ । କିନ୍ତୁ ହସ୍ତୀ ସହ 'ପକ୍ଷୀ'ର କୌଣସି ସମ୍ପର୍କ ନ ଥିବାରୁ ଏହି ଶବ୍ଦର ପ୍ରୟୋଗ ସମ୍ୱନ୍ଧରେ ସନ୍ଦେହ ହୁଏ । ଅର୍ଥ ଦୃଷ୍ଟିରୁ 'ପକ୍ଷ' ଶବ୍ଦର ପ୍ରୟୋଗ ବିଶେଷ ସାର୍ଥକ ଜଣାପଡୁଥିବାରୁ, 'ପକ୍ଷ'ଶବ୍ଦକୁ ସମ୍ଭାବ୍ୟ ପାଠ ରୂପେ ଗ୍ରହଣ କରାଯାଇ ପାରେ । 'ପକ୍ଷୀ' ଶବ୍ଦ ପକ୍ଷୀ ହେବାପରେ ଛେଦିଲେ, ଖେଦିଲେ, ଛିଡ଼ିଲା ଯୋଗ କରାଯାଇଛି । କିନ୍ତୁ ଏହି ଶବ୍ଦ ପ୍ରୟୋୟରେ କୌଣସି ପୋଥି କାହାରି ସଙ୍ଗେ ମିଳୁ ନ ଥିବାରୁ ଏହା ପରବର୍ତ୍ତୀକାଳରେ ଯୋଗ ହୋଇଥିବା ଅନୁମେୟ ।

୨ । ମନ ବାଳାରେ ପବନ ଭୋଳା
ତା ତୁଲେ ଭାବ ନ ଯାଇ,
ଶକ୍ତି କୁଣ୍ଡଳୀ ସଳଖି
ମୂଳ କମଳ ରୂପିଲେ
ପକ୍ଷେ ନିମଗ୍ନ ବୋଲାଇ ।

୧। (ଖ) (ଘ) ମନ ଭୋଳା, (ଗ) ମନକଲା ଚରମନ ଭୋଳା ତା ତୁଲେ ଭୀ ନ ଯାଇ, (ଘ) ତୁଲ୍ୟେ, (ଙ) ମନ କହିଲାରେ ପବନ ଭଲା ତୋହର ତୁଲେ । ୨। (ଖ) ମୂଳ କମଳ ଶକତି କୁଣ୍ଡଳୀ ସଲଖି ଚାପିଲେ ପଛୁ ଲିମଗ୍ନ ବୋଲାଇ, (ଗ) ସତ୍ୟ ପାତ୍ର କୁଣ୍ଡଳୀ ଭାବି । ମୂଳ କମଳ ଚାପିଲେ ଯେ ପକ୍ଷ ଲିଃ ପୁଲିଆ ବୋଲାଇ, (ଘ) ପଛ ଲିମେଇ, (ଙ) ଶକ୍ତି କୁଣ୍ଡଳୀ ଚାପି ମୂଳ କମଳ ତୋଳିଲେ ଲଘୁ ବଳାଇ ।

୩। ଖୋଜିଲେ ପାୟା ଧୂନିରେ ଗମିଲେ । ୧ ।

ବାହୁଡ଼ାଇ ପାରି ମଲା କିଆଁଇ ସାରିଲେ । ୨ ।

କାଳ ବିକାଳ ଦୂ ସାଧିନ୍ତା ଯେବେ ପାରି । ୩ ।

ଯମରାଜାକୁ ତେ ପାଣି ବୁହାଇ ପାରି । ୪ ।

୧ । (କ) ଖୋଜିଲେ ପାଇୟା ଲୁଥିନି ନ ଗଲେ ।

(ଖ) ଖୋଜି ପାଇଲେ ଧୁନି ଥୟେ କଲେ ।

(ଗ) ନାହିଁ ।

(ଘ) ଖୋଜିଲେ ପାଇ ଦୁର୍ୟଲେ ବାହୁଡ଼ାଇ ।

୨ । (ଖ) ମଲା ଜିଆଁ ଇଲେ

(ଘ) ଜିଉଁଇତ ପାରି

(ଗ) ନାହିଁ

(ଙ) ମଲା ମଲା ବେବେ ଜୀ ଆଇତ ପାର

୩। (ଖ) ତେବେ ପାଣି ବୁହାଇ ମାରଇ

(ଗ) ତେବେ ପାଣି ବୁହାଇତ ପାରି

(ଙ) ଯମ ରାଜାକୁ ପାଣି ବୁହାଇ ।

ଦୁ ଓ ତେ ପ୍ରାଚୀନ ପ୍ରୟୋଗ । ପରବର୍ତ୍ତୀ ପୋଥିରେ ଏହା ପରିବର୍ତ୍ତିତ ହେବା ସ୍ୱାଭାବିକ ।

ବିଭିନ୍ନ ପୋଥିରେ ଥିବା ଭିନ୍ନ ଭିନ୍ନ ପାଠର ଉଦାହରଣ ଦିଆଗଲା । ପାଠ ଭିନ୍ନତାର ଅଜସ୍ର ଉଦାହରଣ **ଶୂନ୍ୟସଂହିତା**ରେ ଅନୁଲିପି ସବୁର ତୁଳନାରୁ ମିଳିବ । ସେ ସବୁରୁ କିଏ ଆଗ, କିଏ ପଛ ଚିହ୍ନିବା କଷ୍ଟ । କିନ୍ତୁ କୌଣସି ସମ୍ପାଦକଙ୍କ ଗୃହୀତ ପାଠ ସେ ସମସ୍ୟାର ଶେଷ ନିଷ୍ପତ୍ତି ନୁହେଁ । ସେଥିପାଇଁ ଅନ୍ୟ ଅନୁଲିପିର ପାଠାନ୍ତର ସବୁକୁ ଏପରିକି ବିକୃତ ପାଠାନ୍ତରରୁ ଗୃହୀତ ପାଠ ସବୁକୁ ବିଚାରକୁ ନେବା ଉଚିତ ।

## ସୀସୁବେଦର ଧର୍ମତତ୍ତ୍ୱ

ଓଡ଼ିଶାର ନାଥ ସଂପ୍ରଦାୟର ଯେଉଁ ଅବଶେଷ ଅଛି, ସେଥିରୁ ନାଥ ଧର୍ମ ଯେ ଦିନେ ଓଡ଼ିଶାର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ପ୍ରବଳ ଲୋକପ୍ରିୟତା ଅର୍ଜନ କରିପାରିଥିଲା, ତାହା ଅନୁମାନ ସୁଦ୍ଧା କରି ହୁଏ ନାହିଁ । ନାଥଗ୍ରନ୍ଥର ପରମ ବେଦ **ସୀସୁବେଦ** ଓଡ଼ିଶୀ ବୈଷ୍ଣବମାନେ ଆପଣାର ବୋଲି ଗ୍ରହଣ କରିନେବା ପରେ ଓଡ଼ିଶାରୁ ନାଥମାନଙ୍କର ସ୍ୱାତନ୍ତ୍ର୍ୟ ଲୋପ ପାଇଯାଇଛି । ଓଡ଼ିଶୀ ବୈଷ୍ଣବମାନଙ୍କର କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା ସମ୍ମୁଖରେ ସେମାନେ କେବଳ ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇ ବଞ୍ଚିରହିଛନ୍ତି । ସେଥିପାଇଁ **ସୀସୁବେଦ**କୁ ନାଥଧର୍ମର ଗ୍ରନ୍ଥ ବୋଲି ଦାବୀ କରିବାକୁ **ସୀସୁବେଦ**ର କେତୋଟି ପଂକ୍ତି ହିଁ ସହାୟକ । ଏହି ଗ୍ରନ୍ଥ ମୀନ, ଚଉରଙ୍ଗି ଓ ଗୋରେଖ ପ୍ରଭୃତି ପ୍ରସିଦ୍ଧ ନାଥ ସିଦ୍ଧମାନଙ୍କର ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ନାଥମାନଙ୍କର ଆଦିନାଥ ଈଶ୍ୱର ବା ମହାଦେବଙ୍କୁ ଓ ପରମଗୁରୁ ଗୋରେଖନାଥଙ୍କୁ ଦୃଷ୍ଟାନ୍ତ ରୂପେ ଗ୍ରହଣ କରିଛି । ଏହା ବ୍ୟତୀତ 'ବନ୍ଦନ୍ତି ନାଥେ ଯେତି ସିଦ୍ଧଙ୍କର ବିଶ୍ୱାସ 'ଓଁ' ନାଥ ବଦନ୍ତି କରିଅଛୁ ଜୀବନକୁ ଉପାୟେ' ପ୍ରଭୃତି ପଂକ୍ତି **ସୀସୁବେଦ**କୁ ନାଥଧର୍ମର ଗ୍ରନ୍ଥରୂପେ ପ୍ରମାଣିତ କରେ । ସବୁଠାରୁ ପ୍ରକୃଷ୍ଟ ପ୍ରମାଣ ହେଉଛି **ସୀସୁବେଦ**ର ପ୍ରତିପାଦିତ ଧର୍ମତତ୍ତ୍ୱ । ନାଥଧର୍ମର ଅନ୍ୟାନ୍ୟ ପ୍ରମାଣିତ ଗ୍ରନ୍ଥ ସହ ଏହାର ସମତା ତଥା ସାଦୃଶ୍ୟ ରହିଛି । ସେହି ସବୁକୁ ଅନ୍ୱେଷଣ କରି ଦେଖାଇବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

**ସୀସୁବେଦ** ସିଦ୍ଧାନ୍ତ ଗ୍ରନ୍ଥ ନୁହେଁ, ସାଧନ ଗ୍ରନ୍ଥ । ଏଥିରେ ନାଥ ସଂପ୍ରଦାୟର ସାଧନ ମାର୍ଗ ସୂତ୍ରାକାରରେ ବା ଅତି ସଂକ୍ଷେପରେ କୁହାଯାଇଛି । ଯୋଗୀକୁ ସିଦ୍ଧ ହେବାକୁ ହେଲେ କାୟା ସାଧନା ଅତି ଆବଶ୍ୟକ । କାୟାସିଦ୍ଧ ନ ହେଲେ ନୟନ ନିଶ୍ଚଳ ହୁଏ ନାହିଁ । ନୟନ ନିଶ୍ଚଳ ନ ହେଲେ ମନ ସ୍ଥିର ହୁଏ ନାହିଁ । ମନ ସ୍ଥିର ନ ହେଲେ ଯୋଗୀ ପରମ ପଦ ପାଏ ନାହିଁ ବା ସହଜ ସମାଧିରେ ଲପନ ହୁଏ ନାହିଁ । ନିରଞ୍ଜନ ବା ଶୂନ୍ୟସହ ସମରସ ପାଇବାକୁ ହେଲେ ଯୋଗୀକୁ ଯେଉଁ ଯେଉଁ ମାର୍ଗ ଅବଲମ୍ବନ କରିବାକୁ ହୁଏ, ଯେଉଁ ଆସନର ଅଭ୍ୟାସ ଆବଶ୍ୟକ ବା ଯେଉଁସବୁ ସମାଧି ମଧ ଦେଇ ଯୋଗୀକୁ ସହଜ ସମାଧି ମିଳେ, ସେହି ସବୁରେ **ସୀସୁବେଦ** ତାର ନିର୍ଦ୍ଦେଶକ ।

**ସୀସୁବେଦ**ରେ ନାଥ ସାଧନାର ଦୁଇଟି ଧାରା ବିଦ୍ୟମାନ । ଶ୍ଳୋକ ସବୁରେ ଷଡ଼ଚକ୍ର ସାଧନାଦ୍ୱାରା ମନ, ପବନ ଓ ବିନ୍ଦୁର ସ୍ଥିରତା ଆଣି ଯୋଗୀ ସିଦ୍ଧ ହେବା ଉପାୟ କୁହାଯାଇଛି । ଅଥଚ ଅର୍ଥ ବା ଟୀକାରେ କେବଳ ଭ୍ରୂମଧସ୍ଥିତ ଆଜ୍ଞାଚକ୍ରର ପ୍ରାଧାନ୍ୟ ସ୍ୱୀକାର କରାଯାଇଛି । ଟୀକାକାର **ସୀସୁବେଦ**ର ଶ୍ଳୋକ ସବୁକୁ ବାଖ୍ୟା କରି ପ୍ରାୟ ଦଶୋଟି ସମାଧିର ପରିଚୟ ଦେଇଛନ୍ତି । ଏ ପ୍ରବନ୍ଧରେ କେବଳ ଶ୍ଳୋକାଂଶ ଆଲୋଚିତ ।

ଗୋରଖନାଥ ଓ ଅନ୍ୟାନ୍ୟ ସଂଯୋଗୀମାନେ ଶରୀର ସାଧନାକୁ ପ୍ରମୁଖ ସ୍ଥାନ ଦେଇଛନ୍ତି । ସେମାନଙ୍କ ମତରେ କାୟା ସାଧକ ବା ହଂଯୋଗୀକୁ ଅହୁଂ ହାତ ପରିମିତ ଶରୀର ସହ ପରିଚିତ ହେବା ଉଚିତ । ଏହି ଶରୀରରେ ତିନୋଟି ଶକ୍ତିଶାଳୀ ପଦାର୍ଥ ଅଛନ୍ତି । ସେଥିମଧ୍ୟରୁ ପ୍ରଧାନ ବସ୍ତୁ ହେଉଛି ବିନ୍ଦୁ ବା ଶୁକ୍ର । ଅନ୍ୟ ଦୁଇଟି ହେଉଛନ୍ତି ପବନ ଓ ମନ । ବିନ୍ଦୁ ସ୍ଥିର ହେଲେ ଯୋଗୀ କାମନା ବିମୁକ୍ତ ହୁଏ । **ସୀସୁବେଦ**ରେ ଅଛି -

ପବନ ଥିରାନ୍ତେ ଆଶା ଛେଦଇ,
ମନ ଥିରାନ୍ତେ କାମନ୍ତ ରୁନ୍ଧଇ ।
ସୁହେତି ଅଚଳ ବାନ୍ଧିଲେ ଜାଣ,
ତେସେପିଣ୍ଡକୁ ପରଚେ ପ୍ରାଣ ।

**ସିଦ୍ଧ ସିଦ୍ଧାନ୍ତ ପଦ୍ଧତି**ରେ ଗୋରଖନାଥ ବିନ୍ଦୁ ଧାରଣର ଗୁରୁତ୍ୱ ବର୍ଣ୍ଣନା କରି ଲେଖିଛନ୍ତି - ''ମରଣମ୍ ବିନ୍ଦୁ ପାତନେ ଜୀବନ ବିନ୍ଦୁ-ଧାରଣାତ୍ ।'' କାୟା ଜରା ମୃତ୍ୟୁର ଅଧୀନ । କାୟାକୁ ସିଦ୍ଧ କରିବାକୁ ହେଲେ ବିନ୍ଦୁ ଧାରଣ ଆବଶ୍ୟକ । କାରଣ ବିନ୍ଦୁରୁ ଦେହର ବିକାଶ ଓ ବିନ୍ଦୁ ଚଞ୍ଚଳ ହେଲେ ଜରା ମୃତ୍ୟୁ ନିଶ୍ଚିତ । ସେଥିପାଇଁ ବିନ୍ଦୁକୁ ସ୍ଥିର କରିବା ଯୋଗୀର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ହେବା ଉଚିତ । **ଅମରୌଘ ଶାସନ** ଶୀର୍ଷକ ଗ୍ରନ୍ଥରେ କୁହାଯାଇଛି ଯେ ମେରୁଦଣ୍ଡର ମୂଳରେ ସୂର୍ଯ୍ୟ ଓ ଚନ୍ଦ୍ର, ମଧ୍ୟବର୍ତ୍ତୀ ତ୍ରିକୋଣ ଭୂମି ଉପରେ ସ୍ୱୟଂମ୍ଭୁ ଲିଙ୍ଗ ଅଛି । ଏହାକୁ ପଶ୍ଚିମ ଲିଙ୍ଗ ମଧ୍ୟ କୁହନ୍ତି । ଏହା ହେଉଛି ପୁରୁଷର ଶୁକ୍ର ଓ ସ୍ତ୍ରୀର ରଜଃ ସ୍ଖଳନର ମାର୍ଗ । କାମ ବିଷହର ଓ ନିରଞ୍ଜନ ଏକାଠି ରୁହନ୍ତି । ବୀର୍ଯ୍ୟ ଦୁଇ ଅବସ୍ଥାରେ ସ୍ଖଳିତ ହୁଏ । ଏହାକୁ ପ୍ରଳୟ ଓ ବିଷକାଳ କୁହନ୍ତି । ଏହି ଦୁଇ ଅବସ୍ଥାରେ ଯେଉଁ ଆନନ୍ଦ ମିଳେ, ତାହା ଜୀବ ପାଇଁ ଘାତକ । ପ୍ରଳୟ କାଳର ଅଧିଷ୍ଠାତା ଦେବତା ହେଉଛନ୍ତି କାମ, ଓ ବିଷକାଳର ବିଷହର । ଯୋଗୀମାନଙ୍କୁ ଏ ଦୁଇ ପଥ ତ୍ୟାଗକରି ତୃତୀୟ ପଥ ଖୋଜିବା ଉଚିତ । ତୃତୀୟ ଅବସ୍ଥାରେ ବିନ୍ଦୁ ନିମ୍ନମୁଖ ନ ହୋଇ ଊର୍ଦ୍ଧ୍ୱ ମୁଖ ହୁଏ । ଏହି ଅବସ୍ଥାକୁ ପାଇବାପାଇଁ ଯୋଗୀକୁ ପ୍ରଥମେ ଷଟ୍ କର୍ମ କରିବା ବିଧେୟ । ଷଟ୍ କର୍ମ ହେଉଛି ଧୌତି, ବସ୍ତୀ, ନେତି, ତ୍ରାଟକ, ନୌଳି ଓ କପାଳ ଭାତି । ଷଟ୍ କର୍ମ ସାଧନା ଦ୍ୱାରା ନାଡ଼ିସବୁ ଶୁଦ୍ଧ ହୁଏ । ନାଡ଼ିସବୁ ଶୁଦ୍ଧହେଲେ ବ୍ରହ୍ମଚର୍ଯ୍ୟ ବିନ୍ଦୁ ସ୍ଥିର ହୁଏ । ପ୍ରାଣାୟାମର ସାଧନ ପାଇଁ ଏହା ପ୍ରଶସ୍ତ ସମୟ । ପ୍ରାଣାୟାମ ଦ୍ୱାରା ମୂଳାଧାରରେ ତିନି ବଳୟରେ ସୁପ୍ତ କୁଣ୍ଡଳିନୀ ଜାଗ୍ରତ ହୁଏ । ଏହି ପ୍ରବୁଦ୍ଧ କୁଣ୍ଡଳିନୀ କ୍ରମଶଃ ଷଡ଼ଚକ୍ର ଭେଦ କରି ସହସ୍ରାର ଚକ୍ରରେ ନିରଞ୍ଜନ ସହ ମିଳିତ ହୁଏ । **ସୀସୁବେଦ**ରେ ଅଛି -

ପବନ ପାଲଟିବେ ଛଡ଼ଚକ୍ର ଫୁଟିବେ ସତ ରହିବେ

ଶୁଖିଯିବେ ପାଣି,

ଚନ୍ଦ୍ର, ସୂର୍ଯ୍ୟ ଯେଉଁ ଯୋଗୀ ଗଣ୍ଠି ପାଡ଼ି ପାରଛ

ସେ ଯୋଟୀ ଅତି ଗରୁହ ବିନ୍ଧାଣୀ ।

ଅନ୍ୟ ଗୋଟିଏ ପଦରେ ବିନ୍ଦୁକୁ ଉଜାଣି ଉଠାଇ କାୟାକୁ ବଜ୍ର ସଦୃଶ କରିବା କଥାକୁ ଆହୁରି **ସ୍ପଷ୍ଟ** କରି ଦିଆଯାଇଛି -

ଡାହାଣା ବ୍ରର୍ତେକ ରସ ଉଯାଇଂ ଲେ

ଦିନେ ଦିନେ ନିବିଡ଼ଛ କାୟେ,

ମାହାରସ ଶୋଷିବେ ଗୁଞ୍ଜ ନ ଖସିବେ

ନାଥ ବଦନ୍ତି କରିଅଛୁ ଜୀବନକୁ ଉପାୟେ ।

ମନ ଓ ପବନ ଉଭୟେ ସ୍ୱଭାବତଃ ଚଞ୍ଚଳ । ସେଥିପାଇଁ **ସୀସୁବେଦ**ରେ ମନକୁ ବାଳା ଓ ପବନକୁ ଭୋଳା ପୁରୁଷ ସଙ୍ଗେ ତୁଳନା କରାଯାଇଛି । ଏମାନଙ୍କର ଭାବ ହେଲେ ଜୀବ ମୃତ୍ୟୁମୁଖୀ ହୁଏ । ଜୀବକୁ ଜୀବନ୍ମୁକ୍ତ କରିବାକୁ ହେଲେ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରିବା ଉଚିତ ।

ମନ ବାଳାରେ ପବନ ଭୋଳା ତା ତୁଲେ ଭାବ ନ ଯାଇ,

ଶକ୍ତି କୁଣ୍ଡଳ ସଲଖି ମୂଳ କମଳ ଚାପିଲେ ପକ୍ଷେ ନିମଗ୍ନ ବୋଲାଇ

ପବନକୁ ନିରୋଧ ବା ସ୍ତମ୍ଭୀଭୂତ କରିବା ଯୋଗୀର ପ୍ରଧାନ କର୍ତ୍ତବ୍ୟ । ମଣିଷର ନାଡିସବୁ ମଧ୍ୟରେ ବାୟୁ ବିଚରଣ କରୁଥାଏ । କାର୍ଯ୍ୟଭେଦରେ ଏହାର ଦଶଟି ନାମ- ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ, ନାରା, କୂର୍ମ, ବୃକର, ଦେବଦତ୍ତ ଓ ଧନଞ୍ଜୟ । ହୃଦୟ ଦେଶରେ ପ୍ରାଣ ବାୟୁର ସ୍ଥାନ । ବ୍ୟାନ ବାୟୁ ସମସ୍ତ ଶରୀରରେ ପ୍ରବାହିତ ହେଉଅଛି । ଅପାନ, ସମାନ ଓ ଉଦାନ ଯଥାକ୍ରମେ ଗୁହ୍ୟ, ନାଭିମଣ୍ଡଳ ଓ କଣ୍ଠ ମଧ୍ୟରେ ଅବସ୍ଥାନ କରନ୍ତି । ଏହି ପ୍ରାଣାଦି ପାଞ୍ଚୋଟି ବାୟୁ ଶରୀରରେ ପ୍ରଧାନ ।

ଜୀବ, ପ୍ରାଣ ଓ ଅପାନ ବାୟୁ ସାହାଯ୍ୟରେ ଶରୀରର ନିମ୍ନଭାଗରେ ପ୍ରଧାବିତ ହେଉଅଛି । ପ୍ରାଣ ବାୟୁଦ୍ୱାରା ବାମଭାଗରେ ଓ ଅପାନ ବାୟୁଦ୍ୱାରା ଦକ୍ଷିଣ ଭାଗରେ ଏହାର ବିହାର । ପ୍ରାଣ ଓ ଅପାନ ବାୟୁ ପରସ୍ପରକୁ ଉର୍ଦ୍ଧ୍ୱ ଓ ଅଧୋଦେଶକୁ ଆକର୍ଷଣ କରୁଅଛି । ବିଭିନ୍ନ ପ୍ରକାର ଅଭ୍ୟାସ ଦ୍ୱାରା ଯୋଗୀ ଚନ୍ଦ୍ର ଓ ସୂର୍ଯ୍ୟ ମାର୍ଗକୁ ବନ୍ଦ କରିଦିଏ ଓ ସେଥିରେ ପ୍ରବାହିତ ହେଉଥିବା ବାୟୁ ସୁଷୁମ୍ନାର ମଧ୍ୟବର୍ତ୍ତୀ ବ୍ରହ୍ମନାଡ଼ିର ଭିତର ଦେଇ ଉପରକୁ ଉଠେ ।

ଶରୀର ପ୍ରାଣ ବାୟୁ ୭୨ ହଜାର ନାଡ଼ି ମଧ୍ୟଦେଇ ପ୍ରବାହିତ ହେଉଥିଲେ ହେଁ କେବଳ ସୁଷୁମ୍ନା ହିଁ ସାର୍ଥକ ଓ ଅନ୍ୟମାନେ ନିରର୍ଥକ । ବସ୍ତୁତଃ ପ୍ରାଣ ବାୟୁର ନିରୋଧକୁ ହିଁ ହଠଯୋଗ କୁହାଯାଏ ।

ବିନ୍ଦୁ ଅଟଳ ଓ ପ୍ରାଣବାୟୁ ସ୍ତମ୍ଭୀଭୂତ ହେବାପରେ ମନ କଳ୍ପନା ବିବର୍ଜିତ ବା 'ଅକଳିତ' ମନ ହୁଏ । ମତ୍ତହସ୍ତୀ ପର୍ବତମାଳରେ ବିଚରଣ କଲାପରି, ମନ ବିଷୟାଶକ୍ତ ଥାଏ । ମନୋରୂପୀ ମତ୍ତହସ୍ତୀକୁ ମହାରସ ପିଆଇବା ଯୋଗୀର କାର୍ଯ୍ୟ । ଶରୀର ମଧ୍ୟରେ ମନୋବହା ନାଡ଼ି ଅଛି । ଏହାର ବହୁ ଶାଖା-ପ୍ରଶାଖା । ମନ ଏହିମାନଙ୍କ ମଧ୍ୟରେ ସଞ୍ଚରଣ କରି ବାହ୍ୟ-ଜଗତରୁ ଶବ୍ଦ ଜ୍ଞାନରୁ ରୂପ ଜ୍ଞାନ ପ୍ରଭୃତି ଆହରଣ କରେ । ଧ୍ୟାନ, ଧାରଣା, ସମାଧି ଦ୍ୱାରା ମନର ନିରୋଧ ହେଲେ, ମନ କାମନା ମୁକ୍ତ ହୋଇ ଜ୍ଞାନ ଲାଭକରେ, ପ୍ରାଣ ପଲ୍ଲବିତ ହୁଏ । **ସୀସୁବେଦ**ରେ ଅଛି -

ମନ ମରଇ ତ ଣୀଅଂଇ ପ୍ରାଣ

ମନ ମରଇ ତ ଲଭଇ ଗ୍ୟାନ

ମନ ଇନ୍ଦି ଯେବେ ପ୍ରକୃତି ନିବାରଇ

ତାହା ମୁଖେ ବ୍ରହ୍ମ ତାକୁ ବିଚାରଇ

ହୃଦୟ ଚକ୍ର ମଧ୍ୟରେ ମନର ସ୍ଥିରତା ଆସେ । 'ହୃଦୟ ଚକ୍ରେ ମନ ହୋଏ ସ୍ଥିର ।' ଏହା ନିର୍ବାତ ପ୍ରଦେଶ । ସେଠାରେ ମନ ଅଚଞ୍ଚଳ ଦୀପଶିଖା ପରି ଦେଦୀପ୍ୟମାନ ହୁଏ । ଏହା ହିଁ ମନର ନିରୋଧ । ହୃଦୟ ଚକ୍ର ମଧ୍ୟରେ ଯେଉଁ ମନର ନିରୋଧ ହୁଏ ତାହା ଅଶୁଦ୍ଧ ମନ । ଏହାପରେ ଶୁଦ୍ଧ ମନ ସୁଷୁମ୍ନାରେ ପ୍ରାଣସହ ମିଳିତ ହୋଇଲେ ଦିବ୍ୟଜ୍ଞାନ ପ୍ରାପ୍ତ ହୁଏ । ଏହା ହେଉଛି ପାତଞ୍ଜଳ ଯୋଗର ଅସମ୍ପ୍ରଜ୍ଞାତ ସମାଧି ।

**ସୀସୁବେଦ** ବିନ୍ଦୁ, ବାୟୁ ଓ ମନର ସ୍ଥିରତାକୁ ଗୁରୁତ୍ୱ ଦେଇଥିଲେ ହେଁ ନାଥ ପନ୍ଥାର ଅନ୍ୟ କେତୋଟି ସାଧନା ପ୍ରତି ଲକ୍ଷ୍ୟ କରାଯାଇଛି । ଗୋଟିଏ ଶ୍ଳୋକରେ ଅଛି ,

ମନେ ମନେ ଥିବା ଭେଦ ନ କହିବା ପିଇବା ଶିତଳ ନୀର

ଶ୍ରୀଗୁରୁ ପ୍ରସନ୍ନେ ଅମୃତ ଭୁଞ୍ଜିବା ପିଇବା ଅମୃତ କ୍ଷୀର ।

ନାଥ ଯୋଗୀମାନେ ମଧ୍ୟ 'ଅମର ବାରୁଣୀ' ପାନ ଦ୍ୱାରା ଅମୃତ କ୍ଷରଣା ନିବୃତ୍ତ କରିବାକୁ ଉପଦେଶ ଦିଆଯାଇଛି । ଏହା କାୟାସିଦ୍ଧିର ପ୍ରକୃଷ୍ଟ ପନ୍ଥା । ଗୋରଖନାଥ କୁହନ୍ତି, ମଣିଷ ଶରୀରର ନାଭି ଦେଶରେ ଅଗ୍ନିମୟ ସୂର୍ଯ୍ୟ ଅଛି । ତାଲୁରେ ଅମୃତାମ୍ବା ଚନ୍ଦ୍ରର ସ୍ଥାନ । ଚନ୍ଦ୍ର ନିମ୍ନମୁଖୀ ହୋଇ ଅମୃତ ବର୍ଷା କରେ । ସୂର୍ଯ୍ୟ ଉର୍ଦ୍ଧ୍ୱମୁଖରେ ତାହା ପାନ କରେ । ଅମୃତ ନାଶ ହେବାଫଳରେ ମନୁଷ୍ୟର ମୃତ୍ୟୁ ହୁଏ । ତେଣୁ ଓଲଟ ସାଧନା କରି ଏହି ଅମୃତକୁ ରକ୍ଷା କରିବା

ପ୍ରତ୍ୟେକ ଯୋଗୀର କର୍ତ୍ତବ୍ୟ । ଗୁରୁ ଉପଦେଶ ସାହାଯ୍ୟରେ ସୂର୍ଯ୍ୟକୁ ଉପରେ ଓ ଚନ୍ଦ୍ରକୁ ତଳେ ରଖିପାରିଲେ ଯୋଗୀ କାଳ-ଜୟୀ ହୁଏ । ଏହି ଅମୃତର ସ୍ଥାନ ହେଉଛି କଣ୍ଠ ଚକ୍ର । ଖେଚରୀ ମୁଦ୍ରା ସାହାଯ୍ୟରେ ଯୋଗୀ ଏହି ଅମୃତ ପାନ କରନ୍ତି ।

ଯୋଗୀର ଅନ୍ୟ ଗୋଟିଏ ଲକ୍ଷ୍ୟହେଉଛି ଜୀବନ୍ମୁକ୍ତ ହେବା । **ସୀସୁବେଦ**ରେ "ପିଣ୍ଡଛାଡ଼ି ପ୍ରାଣ କେବେହେଂ ନ ଯାୟେ । ତେ ସେ ପିଣ୍ଡକୁ ପରତେ ପ୍ରାଣୀ । ମରନ୍ତେଣ ଯିବାକ କାହିଁ କି, ଜୀଉଂ ଜୀଉଂ ଜୀବ ସମର୍ପି ତହିଂକି" ପ୍ରଭୃତି ପଂକ୍ତି ଦ୍ୱାରା ଯୋଗୀ ଜୀବନ୍ମୁକ୍ତ ହେବା କୁହାଯାଇଛି । ଯୋଗୀ ମୃତ୍ୟୁରେ ମୁକ୍ତିକୁ ବିଶ୍ୱାସ କରେ ନାହିଁ । ସେମାନଙ୍କ ମତରେ ମୃତ୍ୟୁ ହେଲେ ପୁର୍ନଜନ୍ମ ଅବଶ୍ୟମ୍ଭାବୀ । ତେଣୁ କାୟା-ସିଦ୍ଧି ଦ୍ୱାରା କାଳକୁ ଜୟ କରିବାକୁ ହେବ । ସେ ଇହଜଗତରେ ବାସ କରି ମଧ୍ୟ ବାସନାମୁକ୍ତ । ଯୋଗୀର ମୃତ୍ୟୁ, ମୃତ୍ୟୁ ନୁହେଁ । ଏହା ଘଟ ପରିବର୍ତ୍ତନ ମାତ୍ର । ଯମରାଜାର ବଶ ନ ହୋଇ ଯୋଗୀ 'ଜମରାଜାକୁ ପାଣି ବୁହାଇ ପାରେ' ।

ଯୋଗୀର ଶେଷ ଲକ୍ଷ୍ୟ ହେଉଛି 'ସମାଧି', 'ଗଗନ ତଳେ ଲଗାଇ ସମାଦି' ଉଦ୍‌ବୃତ୍ତ କୁଣ୍ଡଳିନୀ ଷଡ଼୍‌ଚକ୍ର ଭେଦକରି ଏହି ଗଗନ ଚକ୍ରରେ ପହୁଞ୍ଚେ । ଗଗନ ଚକ୍ରର ଅନ୍ୟ ନାମ ଶୂନ୍ୟ ଚକ୍ର ବା ସହସ୍ରାର ଚକ୍ର । ଏହା ସହସ୍ର ଦଳ କମଳ ସଦୃଶ । ଏହା ହେଉଛି ଏହି ପିଣ୍ଡର କୈଳାସ । ଏଇଠି ପରମ ଶିବ ବା ନିରଞ୍ଜନ 'ଏକଇ ଠାବରେ ବାସ' । ଯୋଗୀ ଏଇଠି 'ମହାସୁଖ' ପାଏ ।

ଓଡ଼ିଶାରୁ ନାଥମାନେ ବୋଧହୁଏ ନିଃଶେଷ ହୋଇଯାଇଛନ୍ତି । ଯଦି ଥାଆନ୍ତି ପରବର୍ତ୍ତୀ ଧର୍ମ ସବୁର ଆବରଣ ମଧ୍ୟରୁ ସେମାନଙ୍କୁ ଖୋଜି ବାହାର କରିବା ଦୁଃସାଧ । ଏ ଦିଗରେ ଡ଼କଟର ବଂଶୀଧର ମହାନ୍ତିଙ୍କର ପ୍ରଚେଷ୍ଟା ପ୍ରଶଂସନୀୟ ।

## ସୀସୁବେଦର ଭାଷା

ପ୍ରଚୀନ ଓଡ଼ିଆ ସାହିତ୍ୟର ଆଦିଗ୍ରନ୍ଥ **ସୀସୁବେଦ**ରେ ଭାଷାଦୃଷ୍ଟିରୁ ଦୁଇଟି ଭାଗ-ଶ୍ଳୋକ ଓ ଅର୍ଥ । **ସୀସୁବେଦ**ର ଶ୍ଳୋକ ସବୁ ପଦ୍ୟରେ ଓ ଅର୍ଥ ଗଦ୍ୟରେ ଲିଖିତ । ଶ୍ଳୋକ ବା ସୂତ୍ର ଲେଖା ସରିଲେ ଟୀକା ଲେଖା ଆରମ୍ଭ ହୁଏ । ତେଣୁ **ସୀସୁବେଦ**ର ଶ୍ଳୋକାଂଶର ଭାଷା ଅର୍ଥ ବା ଟୀକା ଠାରୁ ପ୍ରାଚୀନତର । ଏ ଆଲୋଚନାରେ **ସୀସୁବେଦ**ର ଶ୍ଳୋକାଂଶକୁ ହିଁ ଗ୍ରହଣ କରାଯାଇଛି ।

**ସୀସୁବେଦ**ର ପଚିଶିଟି ପଦରେ ୪୬୭ ପାଦ ବ୍ୟବହୃତ । ଏଥିରୁ ନ, ପ୍ରତି, ସତି, ନୟନ, ଓ ଅନ୍ୟାନ୍ୟ କେତେକ ଶବ୍ଦ ଏକାଧିକଥର ବ୍ୟବହୃତ ହୋଇଛି । ଅଧିକ ଥିବା ଶବ୍ଦମାଳାର ସଂଖ୍ୟା ହେଉଛି ୧୫୯ । ଏ ସବୁକୁ କାଢ଼ିନେଲେ **ସୀସୁବେଦ**ରେ ମୋଟେ ତିନିଶହ

ଆଠୋଟି ଶବ୍ଦ (୩୦୮)। **ସୀସୁବେଦ**ର ଭାଷା ସମ୍ବନ୍ଧରେ ଆଲୋଚନା କଲାବେଳେ ଏହି ଗ୍ରନ୍ଥର ଲୋକପ୍ରିୟତା କଥା ମନକୁ ଆସେ। ଗୋଟିଏ ପୋଥିରୁ ଆଉ ଗୋଟିଏ ପୋଥିକୁ ପୁଣି ସେ ପୋଥିରୁ ଅନ୍ୟ ଗୋଟିଏ ପୋଥିକୁ ବାରମ୍ବାର ନକଲ ହେବା ଫଳରେ ଭାଷାରେ ପରବର୍ତ୍ତୀ କାଳର ପ୍ରଭାବ ପଡ଼ିବା ସ୍ୱାଭାବିକ। ତେଣୁ **ସୀସୁବେଦ**ର ବହୁ ଶବ୍ଦ ତାର ମୂଳ ରୂପ ତ୍ୟାଗ କରି ପରବର୍ତ୍ତୀ ରୂପ ଧାରଣ କରିଥିବେ। ଉଦାହରଣ ପାଇଁ 'ଦିର୍ଷା' ଶବ୍ଦକୁ ଗ୍ରହଣ କରାଯାଇପାରେ। ଏହି ଶବ୍ଦପାଇଁ 'ନିଷ୍ଠା' (ଖ), 'ବିଷ୍ଟ' (ଗ), 'ତୋଷା' (ଘ), 'କାଷ୍ଠା' (ଙ) ଶବ୍ଦ ବ୍ୟବହୃତ ହୋଇଛି।

ପ୍ରସଙ୍ଗ ଦୃଷ୍ଟିରୁ ଏସବୁ ଶବ୍ଦ ଏକାବେଳେକେ ଅର୍ଥହୀନ ନୁହନ୍ତି। ଏତେ ପରିବର୍ତ୍ତନ ହେଉଥିବାବେଳେ ମୂଳ ପୋଥିର' ଦିଠା' ଶବ୍ଦ ସଂସ୍କୃତ 'ଦୃଷ୍ଟା ଦ୍ୱାରା ପ୍ରଭାବିତ ହୋଇ (କ) ପୋଥିରେ ଦିଷ୍ଟ' ରୂପ ଧାରଣ କରିଥିବା ଅସମ୍ଭବ ନୁହେଁ। ଏହିପରି ଗୃହୀତ ପାଠର 'ଚରାବନ୍ତି' ଶବ୍ଦ। (କ) ପୋଥିରେ ଏହାର ପାଠ ହେଉଛି 'ଚରାଇ', (ଖ) ରେ 'ରୋବନ୍ତି', (ଗ) ରେ 'ରୋବଇ' (ଙ) ରେ 'ଚରାଉ'। 'ଚରାବନ୍ତି'କୁ ସହଜ କରିବା ଉଦ୍ୟମରୁ 'ଚରାଇ' 'ଚରାବଇ' ଓ 'ଚରାଉ' ପାଠର ସୃଷ୍ଟି। 'ରୋବନ୍ତି', 'ଚରାବନ୍ତି'ର ବିକୃତ ରୂପ। 'ଚ'କୁ ଏକାର ପାଠକରି 'ଚରାବନ୍ତି' ଶବ୍ଦ 'ରୋବନ୍ତି'ରେ ପରିଣତ ହୋଇଛି। ଏହିପରି ଆଉ ଗୋଟିଏ ଉଦାହରଣ ହେଉଛି 'ବେନିପକ୍ଷେ ଜଗିଲେ'। 'ପକ୍ଷେ' ଶବ୍ଦକୁ 'ପକ୍ଷ' ପକ୍ଷୀ ଅର୍ଥରେ ଗ୍ରହଣ କରିବାପରେ ଜଗିଲେ 'ଶବ୍ଦ' 'ଛେଦିଲେ', 'ଖେଦିଲେ', ପୁଣି 'ଛିଡ଼ିଲେ' ରେ ପରିଣତ ହୋଇଛି। ଶହ ଶହ ବର୍ଷର ପରିବର୍ତ୍ତନ ପରେ ବି **ସୀସୁବେଦ**ର ପ୍ରାଚୀନତା ଜାଣିବାରେ ଅସୁବିଧା ହୁଏ ନାହିଁ। ନିମ୍ନରେ ଶବ୍ଦଗତ ତଥା ପ୍ରୟୋଗଗତ ପ୍ରାଚୀନତାର କେତୋଟି ଉଦାହରଣ ପ୍ରଦତ୍ତ ହୋଇଛି।

(୧) ଶବ୍ଦଗତ ପ୍ରାଚୀନତା :

ଅଲଗା -- ସଂ ଅଲଗ୍ନ

ଅକଳିତ -- ସଂ ଅକଳ୍ପିତ

ଅମ୍ରୁତ -- ସଂ ଅମୃତ

ଆପ--- ସଂ ଆସା

ଅହଟ୍ଟ -- ସଂ ଅଧ୍ୟୁଷ୍ଟ।

ଏହାର (ଅହଟ୍ଟ) ଅର୍ଥ ହେଉଛି ସାଢ଼େ ତିନ୍। ପ୍ରକୃତରେ ଏହାର ରୂପ ହେଉଛି , 'ଅଚ୍ଛି'। ''ଏଗେ ପୁଣ ଏବ ମା ହଂସୁ ତା ଅଉଚ୍ଛିଂ ଚଂଦା ଅଉଚ୍ଛି ସୁରା ସବୁଲୋୟଂ ଓଭାସେଂତି,'' (ସୁଜ୍ଜ ୧୯)। ''ପାଇଅ ଶବ୍ଦ ମହଣବୋ'', ପୃ ୧୦୪। ହିନ୍ଦି ଶବ୍ଦ **ସାଗର**ରେ

ଏହି ଶବ୍ଦର ପରିଚୟ ନିମ୍ନ ଭାବେ ପ୍ରଦତ୍ତ ହୋଇଛି-

''ଆହୁଂ-ବିଠ (ସଂ ଅଧ୍ୟୁଷ୍ଣ ବଃ ଅର୍ଦ୍ଧ ଚତୁର୍ଥ, ପାକ ଅଦ୍ଧ ଅଉଠ୍‌ଥ, **ଅଧଉଟ,** ଅଧ୍ୟୁଚ ଅଦ୍ଧ୍ଚ)''। ସାଢ଼େ ତିନ୍, ତିନି ଆଉର ଅଧା ପ୍ରୟୋଗର ତିନୋଟି **ଉଦାହରଣ** ଏଥିରେ ରହିଛି। ଜାୟସୀ ଗ୍ରନ୍ଥାବଳୀରୁ ଉଦ୍ଧୃତ ଦୃଷ୍ଟାନ୍ତଟି **ସୀସୁବେଦର** ଅତ୍ୟନ୍ତ **ନିକଟବର୍ତ୍ତୀ** ହୋଇଥିବାରୁ ନିମ୍ନରେ ଦିଆଯାଇଛି ।

ଆହୁଠ ହାଥ ତନ-ସରବର ହିୟା

କବଲ ତେହି ମାଁ ହା ଅଭର ଗାହା (ପୃ-୫୦)

ଏହିପରି ଆଉ କେତୋଟି ପ୍ରାଚୀନ ଶବ୍ଦ ହେଉଛି 'ଉଦେ ଯେକ', **'ଯେକଇ', 'ସଂଏ** ବା ସୟେଂ', 'ପାର୍ବତ', 'ଥମ୍ଭୀଭୂତ', 'ବାଇ', 'ସତି', 'ଛିର', 'ଜସୁ', 'ନିନା', **'ଜୀ',** 'ଭୀଥର', 'ହାଥ', 'ତତ', 'ଚରୂଆ', 'ଗରୁହ', 'ଥିର', 'ତି', 'ସିଦ ନିଷ୍ଣୟେ', **'ଠାବି,** ଠାବ', 'ପାତି', 'ଦିର୍ଷ୍ଣା', 'ଦୂ', 'ଓ ତୋ'

(୨) ପ୍ରୟୋଗ ଗତ ପ୍ରଚୀନତା :

(କ) ବିଶେଷ୍ୟର ବହୁବଚନରେ 'ନ୍ତ' ପ୍ରତ୍ୟୟ -

କାମନ୍ତ

(ଖ) ଅପ୍ରାଣି କାରକ ଶବ୍ଦରେ ପଞ୍ଚମୀ ବିଭକ୍ତିରେ ହୁଂ ପ୍ରତ୍ୟୟ -

ନିରହୁଂ, ତୁଳାହୁଂ, ଲବଣୀହୁଂ

(ଗ) ଣିଜନ୍ତ କ୍ରିୟାର 'ବନ୍ତି' ପ୍ରତ୍ୟୟ -

ଶୁଖିବାକ

(ଘ) କେବଳ ଧାତୁ ମାତ୍ର କ୍ରିୟାପଦ -

ଥ, ପା, ଯା,

(ଙ) ଷଷ୍ଠି ବିଭକ୍ତିରେ 'ଅନ୍ତେ' ପ୍ରତ୍ୟୟ -

ଚଳନ୍ତେ, ବରଷନ୍ତେ, ହାଣନ୍ତେ, ଥିରାନ୍ତେ -

ଏଥିରେ ଆଉ କେତୋଟି ପ୍ରାଚୀନ ପ୍ରୟୋଗ ମଧ୍ୟ ଦେଖିବାକୁ **ମିଳେ, ଯଥା** 'ଚଉରଙ୍ଗିଉ', 'ସାଧିନ୍ତା', 'ବୁଝାବଇଂ', 'ତିନିହେଁ', 'ତେଡ଼େକେହେଁ ଓ **'ତେହ୍ନେକ'** ।

*

# ଚତୁର୍ଥ ପରିଚ୍ଛେଦ

# ଅମରକୋଷ

ନାଥ ସଂପ୍ରଦାୟରେ ଯୋଗ ସାଧନା ପାଇଁ **ଅମରକୋଷ** ପ୍ରକୃତରେ ଅମର । **ସାସୁବେଦ ଓ ସପ୍ତାଙ୍ଗ** ପରି ଏହାର କବି ମଧ ଅଜ୍ଞାତ । ପୁଣି **ସପ୍ତାଙ୍ଗ** ଓ **ଚାରିଖାନି** ପରି ଏହା ସମ୍ବାଦ ଶୈଳୀରେ ରଚିତ । **ଚାରିଖାନି**ରେ ଚୈତନ୍ୟ କହିଚାଲିଛି ଓ ମନ କେବଳ ଶୁଣୁଛି । କିନ୍ତୁ **ଅମରକୋଷ**ରେ **ସପ୍ତାଙ୍ଗ** ପରି ଗୁରୁ ଶିଷ୍ୟଙ୍କର ପ୍ରଶ୍ନୋତ୍ତର ରହିଛି । **ସପ୍ତାଙ୍ଗ** ସହ ଏହାର ଆଉ ଗୋଟିଏ ସାଦୃଶ୍ୟ ହେଉଛି ଯେ, ଏଥିରେ ଶିଷ୍ୟକୁ ପୁତା କୁହାଯାଇଛି । ''ଶୁଣ ପୁତା ଲୋଇରେ'' ।

**ଅମରକୋଷ**ର ବିଷୟବସ୍ତୁ ଅତି ବିସ୍ତୃତ । ଯୋଗ ମାର୍ଗ ଦୃଷ୍ଟିରୁ ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ପରିଚୟ କରାଇବା ସଙ୍ଗେ ଶରୀର ସାଧନା ପାଇଁ ଆବଶ୍ୟକ ହେଉଥିବା ମନ୍ତ୍ର, ଔଷଧ, ଦାନ, ପୁଣି ବିଭିନ୍ନ ପ୍ରକାର ଯୋଗର ବର୍ଣ୍ଣନା ମଧ ଏଥିରୁ ମିଳିଥାଏ । ନିମ୍ନରେ ନାଥମାର୍ଗର କେତୋଟି ବିଶିଷ୍ଟତା ଆଲୋଚିତ ।

### ୧। ଗୁରୁ ଶିଷ୍ୟ ବାଦ

ନାଥ ସଂପ୍ରଦାୟରେ ବିନା ଗୁରୁରେ ସାଧନା ଅସମ୍ଭବ । ସଦଗୁରୁଙ୍କ ଠାରୁ ଦୀକ୍ଷା-ଗ୍ରହଣ ଏହି ସାଧନାର ପ୍ରଥମ ତତ୍ତ୍ୱ । ତାଙ୍କ ମହିମା ବା ଗୌରବ ବିଭିନ୍ନ ଭାଗରେ ବର୍ଣ୍ଣିତ । ଗୁରୁଙ୍କ ଜ୍ଞାନ ହେଉଛି ପୂର୍ଣ୍ଣ ସତ୍ୟ । ତାଙ୍କ ଜ୍ଞାନ ବାଣରେ ଶିଷ୍ୟର ଚଞ୍ଚଳ ଓ ବଳଶାଳୀ ମନ ସ୍ୱବଶ ହୋଇଥାଏ । ସେ ଜ୍ଞାନଦାତା ଓ ଜ୍ଞାନର ଅସୀମ ସ୍ରୋତ ତାଙ୍କରିଠାରୁ ପ୍ରବାହିତ । କେବଳ ଗୁରୁ ହିଁ ତ୍ରିଗୁଣାତ୍ମିକା ମାୟାର ବିଭିନ୍ନ ରୂପ ଓ ରହସ୍ୟର ଦ୍ରଷ୍ଟା । ଗୁରୁ ମୂଳାଧାର ସ୍ଥିତ ପଞ୍ଚ ମହାଭୂତର ପୃଥିବୀ ତତ୍ତ୍ୱରୁ ଶିଷ୍ୟର ସମ୍ବନ୍ଧ ବିଚ୍ଛେଦ କରାଇ ଆଜ୍ଞାଚକ୍ର ପର୍ଯ୍ୟନ୍ତ ନିଅନ୍ତି । ସେଠୁ ଶିଷ୍ୟ ନିଜ ଅନୁଭବ ଓ ବିବେକ ବଳରେ ସହସ୍ରାରକୁ ଗମନ କରେ । ଗୋରଖନାଥ, ସାଧନାର ପ୍ରାଥମିକ ଆବଶ୍ୟକତାକୁ ଅତି ମହତ୍ତ୍ୱପର୍ଣ୍ଣ ଭାବରେ ଗ୍ରହଣ କରି ଯେଉଁ ଗୁରୁ ବ୍ରହ୍ମଗ୍ରନ୍ଥିକୁ ଜୀବଶକ୍ତିରୁ ଅଲଗା କରିପାରେ ସେପରି ଗୁରୁଙ୍କ ଆରାଧନା କରିବାକୁ ଉପଦେଶ ଦେଇଛନ୍ତି ।

**ଅମରକୋଷ**କାର ଗୁରୁବନ୍ଦନାରୁ ନିଜ ଗ୍ରନ୍ଥର ଆରମ୍ଭ କରିଛନ୍ତି । ଏହି ବନ୍ଦନାର ଆଦିନାଥ, ଗୋରେଖ ଓ ଲୋଇଙ୍କ ସହିତ ଶବରୀନାଥ, କଛଡ଼ିନାଥ, ଜାଳାନ୍ଧର, ଗୋବିନ୍ଦଚନ୍ଦ୍ର, ତୁଷ୍ଟିକିପାଏ, ରାଜା ନରିନ୍ଦ୍ର, ହରିଶ୍ଚନ୍ଦ୍ର, ଧର୍ମ ଯୁଜେଷ୍ଟି, ସତ୍ୟବାଦୀ, ଚନ୍ଦ୍ରେଶ୍ୱର, ମଚ୍ଛିନ୍ଦ୍ରନାଥ,

ଗୌରଙ୍ଗ ନାଥ, ସତୀ କଣେଆରୀ ପ୍ରଭୃତି ପ୍ରମୁଖ ସିଦ୍ଧାଚାର୍ଯ୍ୟମାନଙ୍କର ନାମୋଲ୍ଲେଖ ଦେଖାଯାଏ ।

ଅଚ୍ୟୁତ ଦାସ ମଧ ଗୁରୁଙ୍କୁ ବନ୍ଦନା କରି **ଚାରିଖାନିର** ଆରମ୍ଭ କରିଛନ୍ତି । ସେ ଗୁରୁ ବଚନକୁ "ଅତି ଅମୂଲ୍ୟ, ସକଳ ବେଦ ପୁରାଣର ସାର, ବିଷମ ସନ୍ଧି ଓ ବିବେକ ବିଚାର" କହିଛନ୍ତି । ଏହା ହେଉଛି ଅମୃତ ପରି । ଏଥିରେ ରମି ପାରିଲେ ଆଉ ସବୁ ବିଷପ୍ରାୟ ପ୍ରତୀୟମାନ ହୁଏ । ଏପରିକି କୋଟୀ ଇନ୍ଦ୍ରପଦ ମଧ ଭିକ୍ଷୁକର ସମ୍ବଳ ପରି ତୁଚ୍ଛ ଜଣାପଡ଼େ । ଏଥିରେ ରମିଲେ ମୁକ୍ତି ମିଳେ ଓ ଏହାକୁ ଜାଣିଲେ ମଣିଷ ଅଜର ଓ ଅମର ହୁଏ । ମୃତ୍ୟୁ ଦେବତାର ଗଞ୍ଜଣାରୁ ମଣିଷ ରକ୍ଷା ପାଏ ।

**ସିଦ୍ଧସିଦ୍ଧାନ୍ତପଦ୍ଧତି, ଗୋରକ୍ଷସିଦ୍ଧାନ୍ତସଂଗ୍ରହ** ଓ ହିନ୍ଦୀ ନାଥପନ୍ଥୀୟ ରଚନାବଳୀରେ ଗୁରୁଙ୍କର ଛତିଶ ଲକ୍ଷଣ ଓ ଶିଷ୍ୟର ବତିଶ ଲକ୍ଷଣ ବର୍ଣ୍ଣିତ । **ସିଦ୍ଧସିଦ୍ଧାନ୍ତପଦ୍ଧତିର ଷଷ୍ଠ** ଉପଦେଶରେ ସିଦ୍ଧଯୋଗୀ ଅବଧୂତଙ୍କୁ ଅତ୍ୟାଶ୍ରମୀ, ଯୋଗୀ, ସିଦ୍ଧଯୋଗୀ, ଜିତେନ୍ଦ୍ରିୟ ଆଦି ଗୁଣରେ ଭୂଷିତ କରାଯାଇଛି । **ଗୋରକ୍ଷସିଦ୍ଧାନ୍ତସଂଗ୍ରହ** ଅନୁଯାୟୀ ଗୁରୁଙ୍କୁ ୧. ଜ୍ଞାନ ପରୀକ୍ଷା-ନିରାଲମ୍ବ, ନିର୍ମମ, ନିବାସୀ, ନିଶଙ୍କ; ୨. ବିବେକ ପରୀକ୍ଷା-ନିର୍ମୋହ, ନିବନ୍ଧ, ନିଃଶଙ୍କ, ନିର୍ବିଷୟ; ୩. ବିବେକ ପରୀକ୍ଷା ବା ପରୀକ୍ଷା ବମେକ-ସର୍ବଙ୍ଗୀ, ସାବଧାନ, ସନ୍, ସାରଗ୍ରାହୀ; ୪. ନିରାଲମ୍ବ ପରୀକ୍ଷା-ନିସ୍ତରଙ୍ଗ, ନିର୍ଦ୍ୱନ୍ଦ୍ୱ, ନିର୍ଲେପ; ୫. ସନ୍ତୋଷପରୀକ୍ଷା-ଅଯାଚିକ, ଅବାଞ୍ଛକ, ଅମାନ, ଅସ୍ଥିର; ୬. ଶୀଳ ପରୀକ୍ଷା-ଶୁରି, ସଂଯମୀ, ଶାନ୍ତ,ଶ୍ରୋତା; ୭. ସହଜ ପରୀକ୍ଷା-ସହଜ, ଶୀତଳ, ସୁଖଦ, ସ୍ୱଭାବ ; ୮. ଶୂନ୍ୟ ପରୀକ୍ଷା-ଲୟ, ଲକ୍ଷ୍ୟ,ଧ୍ୟାନ, ସମାଧି ପ୍ରଭୃତି ଗୁଣ ଓ ଲକ୍ଷଣ ଯୁକ୍ତ ହେବା ଉଚିତ ।

**ଅମରକୋଷ**କାର ଗୁରୁଙ୍କର ବିଭିନ୍ନ ଲକ୍ଷଣ ବର୍ଣ୍ଣନା କରିଥିଲେ ହେଁ **ଲକ୍ଷଣର ନିର୍ଦ୍ଦିଷ୍ଟ** ସଂଖ୍ୟା ଦେଇନାହାନ୍ତି । ଏହି ଗ୍ରନ୍ଥ ଅନୁଯାୟୀ ଗୁରୁଙ୍କର ବିଭିନ୍ନ ଗୁଣ ହେଉଛି -

(କ) ଗଙ୍ଗା ତ୍ରିବେଣୀକୁ ଯିଏ ଚନ୍ଦ୍ର ଘରେ ବନ୍ଧାଇପାରେ ,
(ଖ) ନାଭିରେ ଯିଏ ମେରୁଦଣ୍ଡ ଦେଖେ,
(ଗ) ତଳକୁ ମାରି ଯିଏ ଉପରକୁ ଜିଆଁଏ,
(ଘ) ଯିଏ ଅନ୍ତ ଦନ୍ତ ସିଦ୍ଧାନ୍ତକୁ ଚିହ୍ନିପାରେ,
(ଙ) ଯିଏ ବାହା ଫୁଲାଇ ଗମନ କରେ,
(ଚ) ଦନ୍ତହୀନ ବୃକ୍ଷର ନୟନରେ କନ୍ଦର୍ପର ଜ୍ୟୋତି ପ୍ରକାଶ ପାଉଥିଲେ,
(ଛ) ଶରୀରାର୍ଥ କଥାରେ ସ୍ନେହ ରଖୁଥିଲେ,
(ଜ) ଯିଏ ଖପରାରେ ଭିକ୍ଷାମାଗେ, ଦଣ୍ଡେ ବିଶ୍ରାମ କରେ ନାହିଁ, ପଛକୁ ଆସି ଭିକ୍ଷା ଗ୍ରହଣ କରେନାହିଁ,

(ଝ) ଯାହାର କାୟା ଦୃଢ଼ ମତି ସ୍ଥିର,
(ଞ) ଯେଉଁ ବ୍ୟକ୍ତି ପ୍ରସନ୍ନ ବଦନ,
(ଟ) ଯିଏ ବୃକ୍ଷର ତଳେ ବିଶ୍ରାମ କରେ,
(ଠ) ଭିକ୍ଷାକୁ ଯାହାର ଆଶା ନଥାଏ,
(ଡ) ଯିଏ ମନ ସ୍ଥିର କରି ମଶାଣିରେ ବୁଲେ,
(ଢ) ଯିଏ ଉଦୟରୁ ଅସ୍ତକାଳ ପର୍ଯ୍ୟନ୍ତ ଏକ ଆସନରେ ରହେ,
(ଣ) ଯିଏ ଆଧାର ସଂଯମ କରିପାରେ ଓ ପିଣ୍ଡରେ ଆତ୍ମାର ସନ୍ଧାନ କରେ,
(ତ) ଯିଏ ତ୍ରିବେଣୀ କୂଳରେ କମଳ ପୁଷ୍ପର ଖବର ରଖେ,
(ଥ) ଯିଏ ଭିତରେ ପୂଜାକୁ ମନ କରେ,
(ଦ) ଯାହାର ଅଗୁରୁ, ଚନ୍ଦନ ପ୍ରଭୃତି ବିଳାସ ଦ୍ରବ୍ୟ ପ୍ରତି ଆଦର ନ ଥାଏ,
(ଧ) ଯିଏ କେବଳ କ୍ଷୀର ଆହାର କରି ଜୀବନ ଧାରଣ କରେ,
(ନ) ଯିଏ ଝରିଲା ପାଣିକୁ ଭିତରେ ଭରିପାରେ,
(ପ) ଯିଏ ଦୃଢ଼ ମନରେ ଶୂନ୍ୟ ଗୁମ୍ଫାରେ ପଶେ,
(ଫ) ଯିଏ ପବନକୁ ଉଜାଣି ଉଠାଇ ପରମହଂସ ସହ ମିଶିପାରେ,
(ବ) ଯିଏ ନିଦ୍ରା ସଂଯମ କରିପାରେ,
(ଭ) ଯିଏ କ୍ଷୁଧାବେଳେ ଅନ୍ନ ଭିକ୍ଷା ଦିଏ,
(ମ) ଯିଏ ପାହାନ୍ତି ପହରରେ ଶଯ୍ୟା ତ୍ୟାଗ କରେ,
(ଯ) ଯିଏ ପଚାରିଲେ ଯୋଗ କଥା ନ କହେ,
(ର) ଯିଏ ତ୍ରିକୂଟ ସଙ୍ଗମରେ ସ୍ନାନ କରେ,
(ଳ) ଯିଏ କେବଳ ନୀର ଆହାରକୁ ଇଚ୍ଛାକରେ,
(ବ) ଯିଏ 'ଝାଡ଼ମୂଳ ଆଡ଼'ରେ ରହି ଭିକ୍ଷା କରେ,
(ଶ) ଯିଏ ଶରୀରରେ କାମର ନବକଳାକୁ ଶାନ୍ତ କରିପାରେ,

ଏପରି ସିଦ୍ଧଗୁରୁଙ୍କ ବଚନ ଶିଷ୍ୟର ମତ୍ତହସ୍ତୀ ସଦୃଶ ମନକୁ ଅଙ୍କୁଶ ପରି ଦମନ କରେ । ଶରୀରରେ ଯୋଗ ସାଧନାର ସ୍ଥାନ ସବୁକୁ ଚିହ୍ନାଇପାରେ ଓ ଆହାର ସଂଯମର ପଥ ନିର୍ଦ୍ଦେଶ କରିଦିଏ ।

ଅଚ୍ୟୁତ ଦାସ ଗୁରୁଙ୍କୁ ବାଟ ଦେଖାଇବା ଲୋକ ସହ ତୁଳନା କରିଛନ୍ତି । ଯେପରି ବାଟୋଇକୁ ବାଟ ଦେଖାଇ ଦେଇ, ଦେଖାଇବା ଲୋକ ତା ସାଙ୍ଗରେ ଯାଏନାହିଁ, ସେହିପରି ଗୁରୁ । ସେତ ବାଟ ଦେଖାଇ ରହିଯା'ନ୍ତି । ତା' ପରେ ଶିଷ୍ୟ ନିଜ ଅନୁଭବ ବଳରେ ଅଗ୍ରସର ହୁଏ ଓ ମହାନନ୍ଦ ଲାଭ କରେ ।

## ୨-ପିଣ୍ଡ-ବ୍ରହ୍ମାଣ୍ଡ ବାଦ

ତାନ୍ତ୍ରିକମାନଙ୍କ ପରି ନାଥ ସିଦ୍ଧମାନେ ପିଣ୍ଡ ବର୍ଣ୍ଣନାକୁ ଅତ୍ୟନ୍ତ ମହତ୍ତ୍ୱ ପ୍ରଦାନ **କରିଛନ୍ତି** । ଉଭୟ ସଂପ୍ରଦାୟରେ ପିଣ୍ଡବ୍ରହ୍ମାଣ୍ଡ ଏକତ୍ୱବାଦ ଗୃହୀତ । **ସିଦ୍ଧସିଦ୍ଧାନ୍ତ ପଦ୍ଧତି** (୨,୩୦) ରେ କୁହାଯାଇଛି ଯେ ଯୋଗୀମାନଙ୍କୁ ପିଣ୍ଡ ମଧ୍ୟସ୍ଥ ନବଚକ୍ର, ଷୋଡ଼ଶ ଆଧାର, ତିନି ଲକ୍ଷ୍ୟ, ପଞ୍ଚ ବ୍ୟୋମକୁ ଅବଶ୍ୟ ଜାଣିବା ଆବଶ୍ୟକ । ଅନ୍ୟତ୍ର ପିଣ୍ଡଗତ ଏକ ସ୍ତମ୍ଭ, ନବଦ୍ୱାର, ପଞ୍ଚ ଦେବତାଙ୍କୁ ନ ଜାଣିଲେ ସିଦ୍ଧି ପ୍ରାପ୍ତ ହେବା ଅସମ୍ଭବ ବୋଲି କୁହାଯାଇଛି । ପିଣ୍ଡ ମଧ୍ୟରେ ସମ୍ପୂର୍ଣ୍ଣ ଚରାଚରର ସନ୍ଧାନ କରିବାକୁ 'ପିଣ୍ଡ-ସଂବିତି' କୁହାଯାଏ (୩,୧) । ଏଥିରେ ଦେବୀ, ପରମତତ୍ତ୍ୱ, ପାତାଳ, ବ୍ରହ୍ମାଣ୍ଡ, ବିଭିନ୍ନ କଳା, ବର୍ଣ୍ଣ, ଉପବର୍ଣ୍ଣ, ଦ୍ୱୀପ, ସମୁଦ୍ର, ଖଣ୍ଡ, ପର୍ବତ, ଉପପର୍ବତ, ନଦୀ, ଉପନଦୀ, କୁଲ୍ୟା, ଉପକୁଲ୍ୟା, ନକ୍ଷତ୍ର, ରାଶି, ନବଗ୍ରହ, ତିଥି, ତାରାମଣ୍ଡଳ, ଦାନବ, ଯକ୍ଷ, ରାକ୍ଷସ, ପିଶାଚ, ଭୂତ, ପ୍ରେତ, କୁଳନାଗ, ସନକାଦୀ ମୁନି, ମାତୃଶକ୍ତି, ଉଗ୍ର ଦେବତା, ମେଘ, ତୀର୍ଥ, ଅନନ୍ତ ସିଦ୍ଧ,ଚନ୍ଦ୍ର, ସୂର୍ଯ୍ୟ, ବୃକ୍ଷ-ଲତା, ଗୁଳ୍ମ, ତୃଣ, କୃମି, କୀଟ, ପତଙ୍ଗ, ସୁଖ, ଦୁଃଖ, ମୁକ୍ତି, ଶାନ୍ତି ଆଦି ନିବାସ କରିଥା'ନ୍ତି । ଏହିପରି ସବୁ ଶରୀରରେ ବିଶ୍ୱରୂପୀ ପରମେଶ୍ୱର, ଚିତ୍ତସ୍ୱରୂପୀ ପରମାତ୍ମା ଅଖଣ୍ଡ ସ୍ୱଭାବ ଧାରଣ କରି ବିରାଜମାନ କରିଥା'ନ୍ତି । ଏହା ହିଁ ନାଥ-ସାହିତ୍ୟର 'ପିଣ୍ଡ ସଂବିତି' ।

**ଅମରକୋଷ**କାର ଟଳମଟଳ କାୟାକୁ ନିର୍ମାଣ କରିବା ପାଇଁ ତଳିପା ଠାରୁ ତାଳୁ ପର୍ଯ୍ୟନ୍ତ ବିଭିନ୍ନ ସନ୍ଧି ସ୍ଥାନର ବର୍ଣ୍ଣନା କରିଛନ୍ତି । ଏହି ପ୍ରସଙ୍ଗରେ ସେ ପାଦକୁ ବାଇବଣ, ଅଙ୍ଗୁଳିକୁ ଚାନ୍ଦପଦ୍ମ, ଖଡୁ ଗଣ୍ଠିକୁ ଚଞ୍ଚଳ, ଆଣ୍ଠୁକୁ ଖଞ୍ଜଣି ହାଡ଼, ଜଙ୍ଘକୁ ତ୍ରିକୁଟ ପଦ୍ମ, ଇନ୍ଦ୍ରିକୁ ଇନ୍ଦ୍ର ଚନ୍ଦ୍ର ନାମ ଦେଇଛନ୍ତି । ଶୁକ୍ଳରୋମ, ନଳିହାଡ଼, ଅଣ୍ଟୁ ଯମଣି, ଯିହ୍ନିକୂପ, ବଡ଼ମ୍ୟାନନ୍ଦ ମାନ, କମଳଚନ୍ଦ୍ର ଦେବତା ପ୍ରଭୃତିର ବି ଉଲ୍ଲେଖ ରହିଛି । ହୃଦୟ ହେଉଛି ଗୋଲାହାଟ । ସେଠି ପରମାତ୍ମା ପ୍ରାଣଲିଙ୍ଗ ସହ ରମଣ କରୁଛି । ତା' ଉପରକୁ ଚଉରାଶି କୋଟୀ । ସେଠି ନିରଞ୍ଜନର ବଜ୍ରକବାଟ । ଘଣ୍ଟିକା ଦ୍ୱାରରେ ତ୍ରିବେଣୀ ଧାର । ତା' ଉପରକୁ କଳିକାଳର ଦୂତ ଫାନ୍ଦ ପାତି ରହିଛନ୍ତି । ତହିଁର ଉପରେ ଜ୍ଞାନଚନ୍ଦ୍ର, ସିଦ୍ଧ ମୁନିମାନଙ୍କର ଆରାଧ ସ୍ଥାନ । ତା'ଉପରକୁ ଅମରେଶ୍ୱର ଆହୁଟ ପାଟଣା । ନାସିକା ଦ୍ୱାରରେ ଶୂନ୍ୟ ପୁରୁଷ ରହେ । ତା' ଉପରକୁ କଣୟ ଗିରି । ସେଠି ଭ୍ରମର ଗୁମ୍ଫା । ତା' ଉପରକୁ ମେରୁଗିରି । ଚନ୍ଦ୍ର ସୂର୍ଯ୍ୟଙ୍କର ସ୍ଥାନ । ଅପାର ଅରଣ୍ୟ ବି ସେଠି ଅଛି । ସେ ହେଉଛି ସାତ ପ୍ରକୃତିର ଘର । ସେଠି ହେଉଛି ଭବନଦୀର ମଧୁବନ ଘାଟ । ଚିତ୍ରଗୁପ୍ତ ଏହାକୁ ରକ୍ଷା କରିଛନ୍ତି । ତା ଉପରେ ତାଳୁ ଚକ୍ର । ସେଠି ଥିବା ବୃକ୍ଷର ଆଦି (ଅଗ) ମୂଳ ସମାନ । ପାଣି ବନ୍ଧାଇ ପାରିଲେ ବୃକ୍ଷମୂଳ ଶୀତଳ ହୁଏ । ସେ ବୃକ୍ଷରେ ଥିବା ପକ୍ଷରବରେ ଈଶ୍ୱରଙ୍କର ଯୋଗଧ୍ୟାନ ଭାଙ୍ଗିଯାଏ । ସେଥିପାଇଁ ପଞ୍ଚୁମୁନା ନାରାଜଦ୍ୱାରା ମାୟାପଟଳ ରୂପୀ ପକ୍ଷୀସବୁକୁ ବିନାଶ କରିବା ଉଚିତ । ଦଶଦ୍ୱାର ରୁନ୍ଧି ପାରିଲେ କାୟାଭେଦ ହୁଏ ଓ ପରମହଂସର ସାକ୍ଷାତ ମିଳେ । ପରମହଂସଙ୍କ ନିବାସସ୍ଥାନ ଉପରକୁ କୁଣ୍ଡଳ ସର୍ପ । ତା' ସାଙ୍ଗରେ ମତ୍ତ ହୋଇ ପାରିଲେ, ଶୃଖିଳା କାୟା ବୃଷାଳ ହୁଏ ।

ପିଣ୍ଡ ବା ଶରୀରର ମହତ୍ତ୍ୱ ବର୍ଣ୍ଣନା କରିବା ଅଚ୍ୟୁତ ଦାସଙ୍କ **ଚାରିଖାନିର** ମୁଖ୍ୟ ବିଷୟବସ୍ତୁ । ପିଣ୍ଡରେ ବ୍ରହ୍ମାଣ୍ଡର କଳ୍ପନା କରି ସେ କହିଛନ୍ତି -

ତଳେ ତଳିପା ଉପରେଣ କେଶ । ଏତେକ ଘେନି ହୋଇଅଛି ବେଶ ।
ଆଣ୍ଠୁ ଗଣ୍ଠି କଟି ନାଭି ମୂଳକୁ । ଏତେ ଶରୀର ପାତାଳ ତଳିକୁ ।
ଜଠର ଠାରୁ କଣ୍ଠତଟ ଯାଏ । ମର୍ତ୍ତ୍ୟଭୂବନ ଯେ ମଧ୍ୟମ କାୟେ ।
କପଟ ଠାରୁ ବ୍ରହ୍ମରନ୍ଧ୍ର ଯାଏ । କଟି ଭୁବନ ବଇକୁଣ୍ଠ ହୋୟେ ।
ଏଥୁଁ ବାହାରେ ଯେ ପରମ ଶୂନ୍ୟ । ସେ ପୁଣି ଏଥେ ହୋଇଅଛି ଲୀନ ।

ଏହା ବ୍ୟତୀତ, ''ଅଶେଷ ଜନ୍ତୁ, ନାନା ଚରାଚର, ପଞ୍ଚ ମହାଭୂତ, ପଞ୍ଚବିଂଶ ତତ୍ତ୍ୱ, ପଞ୍ଚ କଳା'' ସବୁ ଏହି ଦେହରେ ରହିଛି ।

ଦେହର ସବିଶେଷ ଜ୍ଞାନ ଆବଶ୍ୟକ । କାରଣ, କେଉଁ ବାଟେ କେଉଁଯୋଗ ସିଦ୍ଧି ହୁଏ ତାହା ଅନ୍ୟ ବାଟ ଜାଣେ ନାହିଁ । ଉଦାହରଣ ଦେଇ ସେ କହିଛନ୍ତି, ଗନ୍ଧ ଆମୋଦ ଜାଣିବା ନାସିକାର କାର୍ଯ୍ୟ, ଅନ୍ୟ ଅଙ୍ଗରେ ଏହା ସମ୍ଭବ ନୁହେଁ । ସେହିପରି ନାସିକା ବାଟେ ପାଣି ପିଇଲେ ସ୍ୱାଦ ବାରିହୁଏ ନାହିଁ ବା ତୃଷା ଖଣ୍ଡେ ନାହିଁ । ଦେହରେ ଗୁଡ ଲେପି ହେଲେ ଗୁଡ଼ର ସ୍ୱାଦ କହିବା କଷ୍ଟ । ଜିହ୍ୱାଦ୍ୱାରା ଏହାକୁ ଆସ୍ୱାଦନ କରିହୁଏ ।

ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର କଳ୍ପନା କରିବାକୁ ଅଚ୍ୟୁତ 'ସମାଗମ ପଥ' କହିଛନ୍ତି । ଏହା ହେଉଛି ନାଥ ପନ୍ଥାର ସମରସୀକରଣ । ଏହାର ଜ୍ଞାନ ପ୍ରତ୍ୟେକ ନାଥଯୋଗୀର ବିଶେଷ ଆବଶ୍ୟକ । ଏଠି ବଣାହେଲେ ଗୁରୁବ୍ୟଥା ହିଁ ସାର ହୁଏ ।

ପିଣ୍ଡର ପରିଚୟ ହିଁ ଆତ୍ମ ପରଚେ ; 'ଟଳମଟଳ କାୟା', କଞ୍ଚା ଦେହ ବା ଅପକ୍ୱ ଶରୀରକୁ ଯୋଗ ବଳରେ ସାଧନ କରିବା ପ୍ରତ୍ୟେକ ନାଥଯୋଗୀର ଲକ୍ଷ୍ୟ । ଆତ୍ମାର ମୁକ୍ତି ସହ ପିଣ୍ଡଶରୀରକୁ ମୁକ୍ତ କରିବା ଅଚ୍ୟୁତ, **ଅମରକୋଷ**କାର, ତଥା ଗୋରଖନାଥଙ୍କର ମୂଳ ସିଦ୍ଧାନ୍ତ ।

### ୩। ଯୋଗଯୁକ୍ତ ଜ୍ଞାନ

ନାଥସିଦ୍ଧ ମାନଙ୍କ ମତରେ, ଯୋଗ ଓ ଜ୍ଞାନ ଉଭୟ ହିଁ ସାଧନା ପାଇଁ ଆବଶ୍ୟକ । ଶରୀର ଶୁଦ୍ଧ ନ ହେଲେ ଜ୍ଞାନୋଦୟ ଅସମ୍ଭବ । ପୁଣି ପିଣ୍ଡଜ୍ଞାନ ବ୍ୟତୀତ ଶରୀରର ଶୁଦ୍ଧତା ବି ହୁଏ ନାହିଁ । ଏପରି ଦେଖିଲେ ପିଣ୍ଡଜ୍ଞାନ ଓ ଯୋଗକ୍ରିୟାଦ୍ୱାରା ଶରୀରର ଶୁଦ୍ଧି, ପୁଣି ସିଦ୍ଧକାୟାରୁ ପରମଜ୍ଞାନ ଓ ସମରସୀକରଣ ସମ୍ଭବ । ତେଣୁ ଜ୍ଞାନର ପରିସର ପିଣ୍ଡଜ୍ଞାନଠାରୁ ଆରମ୍ଭ କରି ପରମଜ୍ଞାନ ପର୍ଯ୍ୟନ୍ତ ।

**ଚାରିଖାନି ଓ ଅମରକୋଷ** ଉଭୟ ଗ୍ରନ୍ଥରେ ସାଧାରଣ ବିଦ୍ୟାଠାରୁ ଜ୍ଞାନକୁ ପୃଥକ୍ କରି ଦିଆଯାଇଛି । **ଚାରିଖାନି** ଅନୁଯାୟୀ ବେଦ ବେଦାନ୍ତର ପାଠ ଧନ ଅର୍ଜନ ପାଇଁ ; କିନ୍ତୁ ପିଣ୍ଡଜ୍ଞାନ ବଳରେ ବ୍ୟକ୍ତି କର୍ମ ପାଶରୁ ମୁକ୍ତ ହୋଇ ପରମ ପଦ ପାଏ । **ଅମରକୋଷ**କାର ମଧ୍ୟ ସମସ୍ୱରରେ ସାଧାରଣ ବିଦ୍ୟାର ନିରର୍ଥକତା ଘୋଷଣା କରିଛନ୍ତି । ଯେ ସାକ୍ଷୀ ଶବଦ ଜାଣେ, ତା'ର ଜ୍ଞାନ ହେଉଛି **ଖଣ୍ଡ ଜ୍ଞାନ** । ଯେଉଁ ବ୍ୟକ୍ତି ଅନର୍ଗଳ କଥା କହିପାରେ, ତାକୁ ଦେବୀସାଧକ କୁହାଯାଇପାରେ । ଏ ସବୁରୁ ପିଣ୍ଡଜ୍ଞାନ ବା ବ୍ରହ୍ମଜ୍ଞାନ ସ୍ୱତନ୍ତ୍ର । ଏ ଜ୍ଞାନ ବଳରେ ବ୍ୟକ୍ତି କଞ୍ଚା ପିଣ୍ଡକୁ ପାକଳା କରିପାରେ । ତେଣୁ ଶରୀର ଜ୍ଞାନ ହିଁ ପ୍ରକୃତ ଜ୍ଞାନ ।

## ୪। କାମିନୀ

ନାଥସିଦ୍ଧ ମାନଙ୍କ ମତରେ, ନାରୀର କାମିନୀରୂପ ଯୋଗସାଧନରେ ବାଧକ ରୂପେ କାର୍ଯ୍ୟ କରେ । ସେଇଥିପାଇଁ ଗୋରଖନାଥ ପ୍ରମୁଖ ନାଥସିଦ୍ଧମାନେ ନାରୀକୁ ମାୟା ସହ ତୁଳନା କରିଛନ୍ତି ଓ ଏହାଠାରୁ ଦୂରରେ ରହିବା ପାଇଁ ଏବଂ ତ୍ୟାଗ କରିବା ପାଇଁ ବାରମ୍ବାର ଉପଦେଶ ଦେଇଛନ୍ତି । ଗୋରଖନାଥ ନାରୀକୁ 'ଭଗ ରାକ୍ଷସିନୀ' ଆଖ୍ୟା ପ୍ରଦାନ କରିଛନ୍ତି । ଏହି ରାକ୍ଷସୁଣୀର ବିଶେଷତ୍ୱ ହେଉଛି ଯେ, ଏହା ବିନା ଦାନ୍ତରେ ସଂସାରକୁ ଭକ୍ଷଣ କରିଥାଏ । ସେ ମଧ୍ୟ ବାଘୁଣୀ । ସେ ଦିନରେ ଶୋଇରହେ ଓ ରାତି ହେଲେ ସମ୍ପୂର୍ଣ୍ଣ ଶରୀରକୁ ଶୋଷଣ କରେ । ବିଷୟାନନ୍ଦରେ ଅନ୍ଧ ହୋଇ ମଣିଷ ଏପରି ବିଧ୍ୱଂସାତ୍ମକ ବାଘୁଣୀକୁ ପାଳିଥାଏ । ସେ ଶରୀରକୁ ସୃଷ୍ଟି କରେ, ତାକୁ ପାଳନ କରେ ଓ ଯମ ପାଖରେ ଥାଇ ତାକୁ ଡରାଏ । ସେ ବିଭିନ୍ନ ରୂପ ଧାରଣ କରେ । ସେ ପ୍ରକୃତରେ ମାୟା । ସେ ମଧ୍ୟ ସର୍ପିଣୀ ପରି ସମସ୍ତ ସଂସାରକୁ ଦଂଶନ କରେ ।

**ଅମରକୋଷ**କାର ମଧ୍ୟ ନାରୀର ସଂହାରିଣୀ ମୂର୍ତ୍ତି ପ୍ରତି ସାଧକମାନଙ୍କୁ ସଚେତନ କରିଛନ୍ତି । ସେ ସୁନ୍ଦରୀ ଓ ନିଶାଚରୀ । କାଳ ବେଳରେ ସେ ଆସେ ଓ ଆଲିଙ୍ଗନ କରି ଅବଏ (ବା ଅବ୍ୟୟ) କନ୍ଦର୍ପକୁ ଧ୍ୱଂସ କରେ । ସେଥିପାଇଁ ସ୍ତ୍ରୀ ନୟନକୁ ନ ଚାହିଁବା ଉଚିତ । ତା ନୟନରେ ମଦନ ଦେବତା ନିର୍ଭୟ ହୋଇ ବସିଛି । ସେ ଦିନରେ ମୋହେ ଓ ରାତିରେ ଦହେ । ବ୍ରହ୍ମା ମଧ୍ୟ ତା' ମାୟାର ବର୍ଣ୍ଣନା କରିବାକୁ ଅକ୍ଷମ । ସେ ପିଣ୍ଡର ବଇରି ଓ ତପର ନାଶକ । ସେ ପୁଣି ଚତୁରୀ, ନାନା ମାୟା ଦେଖାଇ ନରକୁ ଭଣ୍ଡେ । ଏହାକୁ ତ୍ୟାଗ କରିପାରିଲେ ପିଣ୍ଡପ୍ରାଣ ଏକତ୍ୱ ହୋଇ ଯୋଗ ସୁଗମ ହୁଏ । ଏହାକୁ ଛୁଡ଼ି ନ ପାରିଲେ ସଂସାରରୁ ତରିବା ଅସମ୍ଭବ ।

**ଅମରକୋଷ**ର ରଚନାକାଳ ଜାଣିବା ପାଇଁ ଏହାର ଭାଷା ହିଁ ଏକମାତ୍ର ପ୍ରମାଣ । ପ୍ରୟୋଗ ଦୃଷ୍ଟିରୁ 'କୁ' ପ୍ରତ୍ୟୟ ସ୍ଥଳରେ 'କଇ'ର ବହୁଳ ବ୍ୟବହାର ହୋଇଛି । ଉଦାହରଣ ଯେପରି, କଇଂ, ପାଦକଇଂ, ଉପରକଇଂ, ତହିଂରକଇଂ, ତହିଂର ତରକଇଂ, ପଛକଇଂ, ତାତକଇଂ, ତାକଇଂ । ଆଉ ଗୋଟିଏ ପ୍ରାଚୀନ ମିଣ୍ଡକଇଂ, ଭିକ୍ଷାକଇ ପ୍ରଭୃତି ପ୍ରୟୋଗକୁ

ଗ୍ରହଣ କରାଯାଇପାରେ । ପ୍ରୟୋଗ ହେଉଛି, କ୍ରିୟାରୁ 'କ' ପ୍ରତ୍ୟୟ - ହୋଇବାକ, ପାଡ଼ିଲାକ, ଦେବାକ, ଧ୍ୟାଇଲାକ, ଭାଜିଲାକ ପ୍ରଭୃତି ଶବ୍ଦ ଏହାର ଦୃଷ୍ଟାନ୍ତ । 'ଇ' ପ୍ରତ୍ୟୟର କେତୋଟି ଉଦାହରଣ ଦେଖିବାକୁ ମିଳେ-ମାର୍ଣ୍ଣଇ, କଲଇ, ତାହାଇ, ଉଜାଣଇଁ । ବହୁବଚନ ପାଇଁ 'ନ୍ତ'ପ୍ରତ୍ୟୟର ଉଦାହରଣ ରୂପେ, ଦେବୀନ୍ତ, ବେଦ ସାହାସ୍ର ମାନନ୍ତ ପ୍ରଭୃତିକୁ ଗ୍ରହଣ କରାଯାଏ । ଏ ଗ୍ରନ୍ଥ 'ସି' ପ୍ରତ୍ୟୟରୁ ମଧ୍ୟ ମୁକ୍ତ ନୁହେଁ । ଜାଣିଥାସି, ଥାସି, ଶୁଣସି ପ୍ରଭୃତି ଏହାର ଉଦାହରଣ ।

ଏହା ବ୍ୟତୀତ ଭାଇଂସତି, ପିବନ୍ତି, ଦୁହିନ୍ତି, ଭୁଅ, ମଏ, ନୁଆରଇ, ଉପଲେସ, ଉଛମାନ, ବଅଇ, ତଲେ, ଅଗରୁ ପାଇଁ ଅଗ୍ର, ପେଖିଲା, ଛତି, ତୋ କହୁଁ, ଯେର୍ଣ୍ଣେକ, ଭୂମି ପାଇଁ ଭୁଅ, ତୋଥ, କେର୍ଣ୍ଣେ, ପୋଇ, ଗବନ, ହାଥିଆ, ତାହିଁ, ବକ୍ରଙ୍ଗି ଓ ଅବସୁଖ ପ୍ରଭୃତି ପ୍ରୟୋଗରୁ ଏହାର ପ୍ରାଚୀନତା ପ୍ରମାଣିତ ହୋଇଥାଏ ।

ଏ ସବୁ ପ୍ରାଚୀନ ପ୍ରୟୋଗରୁ କୌଣସି ନିର୍ଦ୍ଦିଷ୍ଟ ସମୟର ସୂଚନା ମିଳେ ନାହିଁ । ତେବେ ଭାଷାର ଯେଉଁ ସବୁ ପ୍ରମାଣ ବଳରେ ସାରଳା ଦାସଙ୍କ **ମହାଭାରତ**କୁ ପଞ୍ଚଦଶ ଶତାବ୍ଦୀର ରଚନାରୂପେ ଗ୍ରହଣ କରାଯାଇଛି, ଉପର୍ଯ୍ୟୁକ୍ତ ଉଦାହରଣରୁ **ଅମରକୋଷ**କୁ ମଧ୍ୟ ସେହି ଶତାବ୍ଦୀର ରଚନାରୂପେ ଗ୍ରହଣ କରାଯାଇ ପାରେ । ସାରଳା ଦାସଙ୍କ **ମହାଭାରତ** ପରି ଏହାର ବୃତ୍ତ । କେତେବେଳେ ଅତି କ୍ଷୁଦ୍ର ତ କେତେବେଳେ ଅତି ଦୀର୍ଘ । ଯତିପାତ ରହିଥିଲେ ବି କେତେ ଗୁଡ଼ିଏ ପଂକ୍ତି ଯତିପାତର ବନ୍ଧନରୁ ବାହାରେ । ଏହିପରି ଦେଖିଲେ **ଅମରକୋଷ** ଓଡ଼ିଆ ସାହିତ୍ୟର ଆଦିକାଳର ଗୋଟିଏ ଅମର ରଚନା ।

ଅନ୍ୟ ଦୃଷ୍ଟିରୁ ମଧ୍ୟ ଓଡ଼ିଆ ସାହିତ୍ୟ ଉପରେ **ଅମରକୋଷ**ର ପ୍ରଭାବ ଲକ୍ଷ୍ୟ କରାଯାଇପାରେ । **ଅମରକୋଷ** ସେ ସମୟରେ ଏତେ ପ୍ରସିଦ୍ଧି ଲାଭ କରିଥିଲା ଯେ, ପରବର୍ତ୍ତୀ କିଛି କବି ନିଜଙ୍କ ରଚନାକୁ 'ଅମରକୋଷ' ନାମରେ ନାମିତ କରିଥିଲେ । ଭକ୍ତକବି ବଳରାମ ଦାସଙ୍କ କୃତ **ଅମରକୋଷ ଗୀତା** ଏହିପରି ଗୋଟିଏ ଗ୍ରନ୍ଥ । ଏଥିରେ ଦଶ ଅଧ୍ୟାୟ ଅଛି । କଟକ ଚନ୍ଦ୍ରୋଦୟ ପ୍ରେସରୁ ୧୯୨୨ ଖ୍ରୀଷ୍ଟାବ୍ଦରେ ଏହା ପ୍ରକାଶ ପାଇଥିଲା । ଶିବ ଓ ପାର୍ବତୀଙ୍କ କଥୋପକଥନରେ ଏହା ରଚିତ । ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ପ୍ରଶ୍ନୋତ୍ତରରୂପେ ଆଉ ଗୋଟିଏ 'ଅମରକୋଷ' ମିଳେ । ଏହାର ଲେଖକ ଅଜ୍ଞାତ । ନବାକ୍ଷରୀ ବୃତ୍ତରେ ଏହା ରଚିତ । 'ଅମରକୋଷ' ନାମକ ଯୋଗଜ୍ଞାନ ସମ୍ବଳିତ ଗଦ୍ୟ ରଚନା ବାରମ୍ବାର ଦେଖିବାକୁ ମିଳେ । ଏହିପରି ଦେଖିଲେ **ଅମରକୋଷ** ପରବର୍ତ୍ତୀ ବହୁ କବିଙ୍କୁ ପ୍ରଭାବିତ କରି ଓଡ଼ଆ ସାହିତ୍ୟରେ ନିଜର ଆସନକୁ ସୁଦୃଢ଼ କରିପାରିଛି ।

ପ୍ରଫେସର ବଂଶୀଧର ମହାନ୍ତି **ଅମରକୋଷ**ର ବନ୍ଦନା ଅଂଶକୁ ସଂଗ୍ରହ କରି ପ୍ରକାଶ କରିଛନ୍ତି । **ଅମରକୋଷ**କୁ ଲୋକନୟନକୁ ଆଣିଥିବାରୁ ସେ ଓଡ଼ଆ ଜାତିର ଧନ୍ୟବାଦର ପାତ୍ର । ଏ ସଂକଳନରେ ପ୍ରକାଶ ପାଇଥିବା **ଅମରକୋଷ**ର ପାଠ କେବଳ ଖଣ୍ଡିଏ ପୋଥିରୁ

ଗୃହୀତ । ସେଥି ପାଇଁ ଅନେକ ସ୍ଥଳରେ ପାଠ ସ୍ପଷ୍ଟ ନୁହେଁ । ସେ ସବୁକୁ ରେଖାଙ୍କିତ କରି ଚିହ୍ନେଇ ଦିଆଯାଇଛି । ପୋଥି ମଧ୍ୟରେ କେତେଗୁଡ଼ିଏ ଶବ୍ଦ ବିକୃତ ରୂପ ଗ୍ରହଣ କରିଛି, ବୋଧହୁଏ ନକଲକାରଙ୍କ ଅସାବଧାନତା ଯୋଗୁଁ । ସେ ସବୁ ଶବ୍ଦକୁ ଅବିକଳ ରଖିବା ସମ୍ଭବ ବି ନୁହେଁ । ସେଥିପାଇଁ ଆବଶ୍ୟକୀୟ ପରିବର୍ତ୍ତନ କରି ପୋଥି ପାଠକୁ ତଳେ ରଖି ଉପରେ ସଂଶୋଧିତ ପାଠ ଦିଆଯାଇଛି । ଆଉ ଗୋଟିଏ ପୋଥିର କିଛି ଅଂଶ ଗ୍ରନ୍ଥ ଶେଷରେ ସଂଯୋଜିତ ହୋଇଛି ।

**ଅମରକୋଷ** ପ୍ରକାଶନ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିବ ।



# ପଞ୍ଚମ ପରିଚ୍ଛେଦ

# ଓଡ଼ିଶାର ଗୁଣି ଗାରୁଡ଼ି

ଉଡ୍ର ଦେଶ ବା ଓଡ଼ିଶା ତନ୍ତ୍ର ସାହିତ୍ୟର ଉଡ୍ଡୀୟାନ ପୀଠ । ଆଦିମ କାଳରୁ ଏ ଦେଶରେ ତନ୍ତ୍ର, ମନ୍ତ୍ରର ପ୍ରବାହ ଦେଖିବାକୁ ମିଳେ । ସଂସ୍କୃତ ସାହିତ୍ୟର ତନ୍ତ୍ର, ମନ୍ତ୍ର ଓଡ଼ିଆ ଭାଷାରେ ଗୁଣି ଗାରୁଡ଼ିରେ ପରିଣତ ହୁଏ । ଏହାର ଏହି ବିକୃତି ବା ଭାଷାନ୍ତର କେବେ ହେଲା କହିବା ସମ୍ଭବ ନୁହେଁ । ତେବେ ସାରଳା ମହାଭାରତର ବିଭିନ୍ନ ପ୍ରସଙ୍ଗରେ ଏହାର ଉଲ୍ଲେଖ ଦେଖିବାକୁ ମିଳେ । ଏଥିରୁ ଏତିକି ଅନୁମାନ କରାଯାଇପାରେ ଯେ ଏସବୁ ଅନ୍ତତଃ ସାରଳା ଦାସଙ୍କ ପୂର୍ବରୁ ଏ ଦେଶରେ ପ୍ରଚଳିତ ଥିଲା । ଏଥିରେ ଉଲ୍ଲିଖିତ ଥିବା ମହାପୁରୁଷ ବା ସିଦ୍ଧଙ୍କ ନାମରୁ ଏହାର ସମୟର କଳନା କଲେ, ଏସବୁ ନବମ ବା ଦଶମ ଶତାବ୍ଦୀରୁ ବେଶୀ ପ୍ରଚୀନ ବୋଲି ଜଣାଯାଏ ନାହିଁ । ଏ ଦେଶରେ ଯେତେବେଳେ ଚଡ଼ଙ୍ଗ (ଚୋଡଗଙ୍ଗ ଦେବ), ମତ୍ସ୍ୟେନ୍ଦ୍ର ନାଥ, ଗୋରଖନାଥ ପ୍ରଭୃତି ସିଦ୍ଧ ପ୍ରସିଦ୍ଧି ଲାଭ କଲେ, ତାଙ୍କ ପରେ, ତାଙ୍କରି ନାମକୁ ଗ୍ରହଣ କରି, ତାଙ୍କରି ଆଜ୍ଞା ବୋଲି କହି ଏସବୁ ପ୍ରଚଳିତ ହେଲା । ଦେଶରେ ଜୈନ, ବୌଦ୍ଧ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ଏହି ସବୁ ପଦରେ ନୂଆ ଦେବତା ଓ ନୂଆ ସିଦ୍ଧ ପୁରୁଷଙ୍କ ନାମ ସଂଯୋଜିତ ହେବାକୁ ଲାଗିଲା । ଏପରିକି ମୁସଲମାନ ରାଜତ୍ୱ କାଳର 'ତୁଡୁକ ଚୁହାଣ' ଓ ଇଂରେଜ ଅମଳର ଶ୍ରୀ ସିଂହ ସାହେବ ମଧ୍ୟ ଏଥିରେ ସ୍ଥାନ ପାଇଲେ । ଏହିପରି ଦେଖିଲେ ଦଶମ ଶତାବ୍ଦୀରୁ ବିଂଶଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ହଜାରେ ବର୍ଷ ଧରି ଏହା ଓଡ଼ିଆ ଜାତିର ଗୁପ୍ତ ଧନ ଭାବେ ସାଧକମାନଙ୍କ ପୋଥିରେ ସାଇତା ହୋଇ ରହିଲା ।

ଲୋକଗୀତ, ଢଗ ଓ ଢମାଳି ଠାରୁ ଏହାର ପାର୍ଥକ୍ୟ ହେଉଛି ଯେ, ଲୋକଗୀତ ଲୋକ ମୁଖରେ ପ୍ରଚଳିତ ହେଉଥିବା ବେଳେ ଏହା ପୋଥିରେ ସଂଗୃହୀତ ହୋଇ ସଂରକ୍ଷିତ । ସାଧକମାନେ ଏହାକୁ ଶିଖି, ଏଥିରେ ସିଦ୍ଧି ପାଇ, ଚମତ୍କାର ପ୍ରଦର୍ଶନ କରୁଥିଲେହେଁ, ଏହା କେବଳ ଲୋକ ମୁଖର ସମ୍ପତ୍ତି ନୁହେଁ, ଏହାର ଲିଖିତ ଗ୍ରନ୍ଥ ମଧ୍ୟ ବହୁ ପରିମାଣରେ ଦେଖିବାକୁ ମିଳେ ।

ଆଧୁନିକ ଯୁଗର ମନୀଷୀମାନେ ବହୁ ଚେଷ୍ଟା କରି ବିଭିନ୍ନ ପ୍ରକାର ଲୋକଗୀତର ସଂଗ୍ରହ କରି ପ୍ରକାଶ କରିଛନ୍ତି । ଓଡ଼ିଶାରେ ଗୋପାଳ ଚନ୍ଦ୍ର ପ୍ରହରାଜ, ଚକ୍ରଧର ମହାପାତ୍ର ଓ ଡ଼କ୍ଟର କୁଞ୍ଜ ବିହାରୀ ଦାଶଙ୍କ ପ୍ରଚେଷ୍ଟାରେ ହଜାର ହଜାର ଲୋକଗୀତ ଓ କାହାଣୀ ପ୍ରକାଶ ପାଇ ପାରିଛି । ଆଧୁନିକ ଯୁଗରେ ଏହା ଏକ ଅଭୂତପୂର୍ବ ଆବିଷ୍କାର ।

ଏହି ସବୁ ସଂଗ୍ରହକୁ ଅନୁସରଣ କଲେ ଏଥିରେ ଜାତି ଜୀବନର ବିବିଧତାହିଁ ପ୍ରଥମେ ଆଖିରେ ପଡ଼େ । ଜାତି ନିଜ ଜୀବନର ଅନୁଭୂତିକୁ ବିଭିନ୍ନ ସମୟରେ ବିଭିନ୍ନ ରୂପ ଓ ଛନ୍ଦ ଦେଇ ପ୍ରକାଶ କରେ । ଏଥିରେ ପିଲା ଅଛନ୍ତି, ବୁଢ଼ା ବି ଅଛନ୍ତି; ବାଳିକା ଅଛନ୍ତି, ବୁଢ଼ୀ ବି ରହିଛନ୍ତି; ବଳିଷ୍ଠ ବପୁଯୁକ୍ତ ଯୁବକଙ୍କ ସହ ଯୌବନରେ ଉନ୍ମାଦିତା ଯୁବତୀ ବି ରହିଛନ୍ତି । ଏଥିରେ ରହସ୍ୟ ଅଛି, ଉପଦେଶ ବି ଅଛି । ଖେଳ ଅଛି ଓ ଦର୍ଶନର ଗମ୍ଭୀର ଭାବାବେଶ ବି ପ୍ରକାଶ ପାଇଛି । ଏହିପରି ଦେଖିଲେ, ଏହି ସବୁ ଗୀତିକା ଭିତରେ ଜାତିର ଜୀବନ ସ୍ରୋତହିଁ ପ୍ରବାହିତ ।

ଗୁଣି ଗାରୁଡ଼ିର ବିବିଧତା ଅନ୍ୟ ପ୍ରକାରର । ସାଧକ ହେବାପାଇଁ ବୟସର ଏକ ନିର୍ଦ୍ଦିଷ୍ଟ ସୀମାରେଖା ରହିଛି । ପୁଣି ସବୁ ଲୋକ ଏଥିରେ ପ୍ରବୀଣ ହେବା ସମ୍ଭବ ନୁହେଁ । ଏହାର ସାଧନା ପାଇଁ ନିର୍ଜନ ରାତ୍ରି, ନିର୍ଜନ ସ୍ଥାନ, ଭୀଷଣ ଶ୍ମଶାନ, ନିର୍ଦ୍ଦିଷ୍ଟ ତିଥି, ବିଶିଷ୍ଟ ନକ୍ଷତ୍ର ସବୁର ଆବଶ୍ୟକତା ଥିବାରୁ ସାଧାରଣ ଲୋକଙ୍କ ପକ୍ଷରେ ଏହାର ସାଧନା କରିବା ସମ୍ଭବ ନୁହେଁ । ଗୁରୁ ଆଶ୍ରା ନ କଲେ, ଏହି ସବୁ ମନ୍ତ୍ର, ତନ୍ତ୍ର, କଚ୍ଛ, ରସାୟନର ଭିତିରି ରହସ୍ୟ ଜାଣି ହୁଏନାହିଁ । ସାଧନା ଦୃଷ୍ଟିରୁ ଏହା ଅତ୍ୟନ୍ତ ଗୂଢ଼ ଓ କଷ୍ଟସାଧ । ଭୂତ, ପ୍ରେତ, ଡାହାଣୀ, ଚିରିଗୁଣୀଙ୍କ ଆକ୍ରମଣରୁ ରକ୍ଷା ପାଇବା ପାଇଁ, ପୁଣି ଜ୍ୱର, ହଇଜା, କୁଷ୍ଠ, ପ୍ଲୀହା ପ୍ରଭୃତି ରୋଗରୁ ମୁକ୍ତ ହେବା ପାଇଁ ଏସବୁର ସୃଷ୍ଟି । ଏହା କେବଳ ଏତିକିରେ ସୀମିତ ନୁହେଁ । ସଭାରେ ବିଜୟ ଲାଭ, ରାଜ ଦରବାରରେ ପ୍ରଶଂସା, ସହସ୍ର ନାରୀ ରମଣ କରିବାର ଶକ୍ତି, ନାରୀ ବା ପୁରୁଷ ବଶ, ଗୋ-ଜାତିର ବିଭିନ୍ନ ପ୍ରକାର ରୋଗର ଚିକିତ୍ସା, ସର୍ପ ଦଂଶନ, ଏପରିକି ବ୍ରହ୍ମ ବିଦ୍ୟା ଏଥିରେ ସଂରକ୍ଷିତ । ଏହାର ପ୍ରସିଦ୍ଧ ନାମ ହେଉଛି, ଉଡାମ୍ବର ତନ୍ତ୍ର । ଏଥିରେ ଥିବା ମନ୍ତ୍ର, ଯନ୍ତ୍ର, କଚ୍ଛ ଓ ରସାୟନକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଏହାର ମୂଳ ଲକ୍ଷ୍ୟ ହେଉଛି, ଶରୀରକୁ ଅମର କରି ଜାତିର ମଙ୍ଗଳ ସାଧନ କରିବା ।

ସାଧନା ଦୃଷ୍ଟିରୁ ଏହା କଷ୍ଟସାଧ ହେଲେହେଁ, ଭାଷା, ସାହିତ୍ୟ ଓ ସଂସ୍କୃତି ଦୃଷ୍ଟିରୁ ଏହା ଅତ୍ୟନ୍ତ ମୂଲ୍ୟବାନ । ଢଗର ଛନ୍ଦ ପରି ଏଥିରେ ମଧ୍ୟ ଏକ ପ୍ରକାର ଛନ୍ଦ ଦେଖିବାକୁ ମିଳେ । କବିତାର ସ୍ୱର ନେଇ ଆରମ୍ଭ ହେବା ପରେ ଏହା ପୁଣି ଗଦ୍ୟରେ ପ୍ରକାଶ ପାଏ ।

''ବିସ୍ୱରି ବିସ୍ୱରି ବିସ୍ୱରି ଘଟ
ବିସ୍ୱରି ଚଳଇ ଗୋରେଖନାଥ''
ମୁଖ ବୀତ୍ରି ମନ୍ତ୍ର ଫିଟା
ଅଖି ଚମକା ଧୂଳିଆ ଦେବୀ
ଯାହାର ନାମ ଧରି ମନ୍ତ୍ରିବି
ସେ ଯାଇ ଘର ପୁତ୍ର ଛାଡି

ଲାଗ ବଳିତା ଲାଗ
ଗେରସ୍ତ ଭାରିଜାରେ ଲାଗ
ଅମୁକାଇ ଦେହରେ ଲାଗ
ଲାଗ ଲାଗ ବୋଲି କାହାର ଆଜ୍ଞା
ଓଁ ଗୋରେଖନାଥଙ୍କର କୋଟି କୋଟି ଆଜ୍ଞା ।

ଗୋରଖନାଥଙ୍କ ଉପଦେଶର ମୂଳ କଥା ହେଉଛି, ଘଟ ଯୋଗ ବା କାୟା ସାଧନା । ଏହି 'ଆଜ୍ଞା'ର ଆରମ୍ଭରେ ଏହି କଥାର ସୂଚନା ଥିଲେହେଁ, ଗେରସ୍ତ ଓ ଭାରିଜା ଘର ଦ୍ୱାର ଛାଡ଼ିବା ପାଇଁ ଏହାର ପ୍ରୟୋଗ ।

ଏହିପରି ବିଲ ମହାଦେବଙ୍କ ଆଜ୍ଞା ଛନ୍ଦର ଅପୂର୍ବତା ମଧରେ ପ୍ରକାଶିତ ।

ବାଉଁଶ ପତର ସରୁ ସରୁ
ଶୁଖିଲା ଘାରେ ପୋକ ପଡୁ
ନଈ ପରମାଣେ ଅତରା ଖାଉ
ବିଲ ମହାଦେବ କତିକି ଯାଉ ।
ଖାଉ ଖାଉ ବୋଲି କାହାର ଆଜ୍ଞା
ବିଲ ମହାଦେବଙ୍କର କୋଟି କୋଟି ଆଜ୍ଞା ।

କଳ୍ପନା ଓ ବାସ୍ତବତାର ଏହା ଏକ ଅପୂର୍ବ ସମାବେଶ । ଘା'ରେ ଥିବା ସରୁ ସରୁ ପୋକକୁ ସରୁ ସରୁ ବାଉଁଶ ପତର ପରି କଳ୍ପନା କରିବାରେ ଅତିରଞ୍ଜନ ଥାଇପାରେ, କିନ୍ତୁ ବଢ଼ି ପାଣି ବେଳେ  ବଡ ବଡ ଅତଡା ଖାଇ ନଈ କୂଳରେ ଥିବା କେତେ ବିଲ ମହଦେବଙ୍କୁ ଯେ ଭସେଇ ନିଏ, ଏହାର ବାସ୍ତବତା ଓଡ଼ିଆ ଜାତିର ଅଙ୍ଗଲିଭା କାହାଣୀ ।

ଶ୍ରୀଚୈତନ୍ୟଙ୍କ ଆଗମନ ପରେ ଏ ଦେଶରେ ଶ୍ରୀକୃଷ୍ଣଙ୍କ ରାସ ଲୀଳା ପ୍ରଚାରିତ ହେଲା । ପଞ୍ଚସଖା ସେହି ସମୟରେ ନିତ୍ୟ ରାହାସର ପରିକଳ୍ପନା କଲେ । **ଶୂନ୍ୟ ସଂହିତା**ରେ ବର୍ଣ୍ଣିତ ନିତ୍ୟ ରାହାସ ଉପାଖ୍ୟାନରୁ ଜଣାଯାଏ ଯେ, ଏହି ରାସ-ମଣ୍ଡଳର ରହସ୍ୟ ଅତି ଗହନ । ଏପରିକି ମାନବତନୁଧାରୀ ଶ୍ରୀକୃଷ୍ଣଙ୍କର ଏଠିକି ଯିବା ନିଷେଧ । ଏହି ଭାବଧାରାକୁ ନେଇ ପ୍ରକାଶିତ ହେଲା, ଶ୍ରୀ ବଡ ଠାକୁରଙ୍କ ଆଜ୍ଞା ସନ୍ତକ :

ନମୋ ଭଗବତୀ, ରୁଦ୍ରାୟେଣୀ, କଳ୍ପଦ୍ରୁମ, ବଉଦ ଅବତାର, ଚତୁଧା ମୂରତି, ନିତ୍ୟ ରାହାସ ମଣ୍ଡଳ ସତାବନ ଗୋଟି, ପଞ୍ଚାଶ ନବକୋଟି କାନ୍ତାୟେନୀ ।

ଗ୍ରାମ ଦେବତୀ, ଗ୍ରାମ ମହେଶ୍ୱରୀ, ଶମଶାନ ଚଣ୍ଡୀ

କାଳ ବିକାଳ ପୁରୁଷ

ତୁମ୍ଭମାନଙ୍କୁ ଆଜ୍ଞା ହେଲା

ଅମୁକ ନଗରେ ଅମୁକଙ୍କ ଘରୁ

ଚତୁସୀମାରୁ ଛାଡ଼ିଯିବୁ

ନଗଲେ ଶ୍ରୀନିତ୍ୟ ରାହାସ ଦୁଆରେ ବିରୋଧ ପାଇବ ।

ଶ୍ରୀ ବଡ଼ ଠାକୁରଙ୍କର ଆଜ୍ଞା ସନ୍ତକ ଦେଖି ଛାଡ଼ିଲୁ ।

ଗଙ୍ଗ ବଂଶୀୟ ରାଜାମାନେ ଶାକ୍ତ ଧର୍ମର ବିରୋଧୀ ଥିଲେ । **ମାଦଳା ପାଞ୍ଜି** କୁହେ ଯେ, ଚୋଡ଼ଗଙ୍ଗଙ୍କ ଅମଳରେ ଦେବୀମାନେ ଅନାଦୃତା ହୋଇଥିଲେ । ସାରଳା ଦାସଙ୍କ **ମହାଭାରତ**ର ମଧପର୍ବରେ ଅଛି ଯେ, ଚୋଡଗଙ୍ଗ କୋଣାର୍କରୁ ରାମଚଣ୍ଡୀକୁ ନେଇ ଲିଆଖିଆ ମୁହାଣରେ ଅବସ୍ଥାପିତ କରିଥିଲେ । ଇତିହାସର ଏହି କଥା ଚୁଡଗଙ୍ଗଙ୍କ ଆଜ୍ଞାରେ ଅତି ଜୀବନ୍ତ ଭାବେ ପ୍ରକାଶିତ ।

ଓଁ ମୋହ ରାମା ରାମଚଣ୍ଡୀ

ବିଜେ କରୁ ବାଲିଖଣ୍ଡି

ଦେଉଳ ଅଛି ଲିଙ୍ଗ ନାହିଁ

ଅଜୀବେ ଜୀବ ନାହିଁ

ମଲା ମଣିଷ ଆଣିବୁ ହସାଇ ଖେଳାଇ

ନଅସୁ ବୋଲି କାହାର ଆଜ୍ଞା

ବାବୁ ଶ୍ରୀ ବୀର ଚୁଡଗଙ୍ଗଙ୍କର କୋଟି କୋଟି ଆଜ୍ଞା

ଡାହାଣୀ ଛଡେଇବା 'ମୁଦ୍ରା'ରେ ଚଉଷଠି ନିଗମ, ଉଡ଼ଙ୍ଗି, ମହାମୁଦ୍ରା, ଚଣ୍ଡ, ବୀରବେତାଳ, ସିଦ୍ଧାଙ୍ଗ ଷୋଳ କଳା ଡାଏଣୀ ପ୍ରଭୃତି ତନ୍ତ୍ର ଶାସ୍ତ୍ରର ପରିଚିତ ଶବ୍ଦ ସହ ନାଥ ଗୁରୁଙ୍କ ପରମ୍ପରା ପ୍ରଦତ୍ତ ।

ଓଁ ଉଡଙ୍ଗି,

ଚଉଷଠି ନିଗମରେ ମହାମୁଦ୍ରା ପଡିଲା

ଏ ଅମୁକାଇ ମଥାରେ ଏ ମୁଦ୍ରା

ଦଶ ଦିଗପାଳ ଦଶ ନନ୍ଦ ଜାଣ

ଦେହରେ ବାଣ ଶିଙ୍ଗାର

ଚଣ୍ଡ ବୀର ବେତାଳ

ଏ ଆଜ୍ଞା ଯେବେ ଫେରୁ

ଶିବ ଘଳରେ ବିଷ ଭରୁ ।

ସିଦ୍ଧ୍ୟାଙ୍କ ଷୋଳ୍ୟ ଯାହାକୁ ଡାଏଣୀ ଲାଗିଥିବ, ଏ ଡାଏଣୀଙ୍କ ଦୂତୀ । ଓଁ ଆଦିନାଥ, ମୀନନାଥ, ଗୋରଖନାଥ ବାଣ ସିଂଘାର ଢଂରକ ଚଣ୍ଡ ବୀର ବେତାଳ ।

ଏସଂସାର ପାଞ୍ଚଟି ତତ୍ତ୍ୱରେ ନିର୍ମିତ-କ୍ଷିତ୍, ଅପ୍, ତେଜ, ମରୁତ, ବ୍ୟୋମ । ବର୍ଣ୍ଣମାଳାର ପଞ୍ଚାଶ ଅକ୍ଷରରେ ଏହି ପାଞ୍ଚ ତତ୍ତ୍ୱ ବାଣ୍ଟି ହୋଇ ରହିଛି । ଉଡ୍ଡାମ୍ବର ତନ୍ତ୍ରର ଦଶମ ପଟଳରେ ଏହି ଶରୀର ଜ୍ଞାନ ନିମ୍ନଭାବେ ବର୍ଣ୍ଣନା କରାଯାଇଛି :

ଶରୀର ଜ୍ଞାନ କହିବ ।

ଜୀବନ-ମରଣ, ଲାଭ-ଅଲାଭ, ସୁଖ-ଦୁଃଖ, ଗମ୍ୟ-ଅଗମ୍ୟ, କପଟ-ସତ୍ୟ ଏମାନ ସମସ୍ତ ଜାଣିମ । ତେମନ୍ତ ସହଦେବ ଜାଣଇ । ପୃଥ୍ୱୀ, ଆପ, ତେଜ, ବାୟୁ, ଆକାଶ । ଏ ପଞ୍ଚତତ୍ତ୍ୱ ସ୍ଥୂଳଶୂନ୍ୟ ଦୁଇ ପ୍ରକାର ।

ସ୍ଥୂଳ ଜିହ୍ୱାରେ ଅକ୍ଷର ରୂପ

ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ୡ

-ଏ ପୃଥ୍ୱୀ ତତ୍ତ୍ୱାକ୍ଷର ।

ଏ, ଐ, ଓ, ଔ, ଅଂ, ଅ

- ଏ ଆପ ତତ୍ତ୍ୱାକ୍ଷର

କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ

-ଏ ତେଜ ତତ୍ତ୍ୱାକ୍ଷର

ଟ, ଠ, ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ବ, ଭ, ମ

-ଏ ବାୟୁ ତତ୍ତ୍ୱାକ୍ଷର

ଯ, ର, ଳ, ବ, ଶ, ଷ, ସ, ହ, କ୍ଷ

- ଏ ଆକାଶ ତତ୍ତ୍ୱାକ୍ଷାର

ବିବିଧ ପ୍ରକାର ଗୀତରେ ସମ, ବିଷମ ଅକ୍ଷର ହୋଇ । ଲାଭ ଚିନ୍ତା ତେଜ, ଆକାଶ ଅକ୍ଷର ହୋଇ । ଦିଶନ୍ତରେ ଅଚେତନ ତେଜା-କ୍ଷର । ଏ ପଞ୍ଚ ତତ୍ତ୍ୱାଙ୍କର ଶୁଭ ରୂପେ ଘଳ ଚିନ୍ତା । ନାସାରନ୍ଧ୍ରେ ଶୀତଳ, ମଧୁର ବହିଲେ ଆକାଶ ତତ୍ତ୍ୱ, ରାତ୍ରେ ତେମନ୍ତ ଜୀବ ମରଣ ଗମନାଗମନ ଜାଣିମ ।

ଆପବାଦେ ପୃଥ୍ୱୀତତ୍ତ୍ୱ ଜାଣିମ । ଇତି ଉଡ଼ିୟ ଦଶମ ପଟଳ । । ଇତି ।

ନାଥ ଯୋଗୀମାନେ ସେମାନଙ୍କ ସିଦ୍ଧି ପାଇଁ ପ୍ରସିଦ୍ଧ । ସେମାନେ ଯାହା ଚାହୁଁ ଥିଲେ ତାହା କରିପାରୁ ଥିଲେ । ମଣିଷ ତ ଦୂରର କଥା, ଦେବତାମାନେ ତାଙ୍କ **ଆଜ୍ଞା** ମାନି ଚଳୁଥିଲେ । ଏଇ ବିଶ୍ୱାସରୁ ଯଶୋବନ୍ତ ଦାସଙ୍କ **ଢେଉରାଣୀ ଆଜ୍ଞା** ଗ୍ରନ୍ଥର ସୃଷ୍ଟି । ନିମ୍ନ ଆଜ୍ଞାରେ ଯୋଗୀର ଏହି ଚମତ୍କାର ବିଭୂତି ଚମତ୍କାର ଭାଷା ମାଧ୍ୟମରେ ପ୍ରକାଶିତ ।

ଓଁ କାକ ମର୍ଦ୍ଦନ ମାଟି

ଚାହିଁମା ସରିକି ପଡୁ ତୋ ପାଟି

ଆଁ କରିଦେଲି ଚାହିଁ

ତୁଣ୍ଡରୁ ଉତ୍ତର ନଇଲା ତହିଂ ।

ନଇଲା ବୋଲି କାହାର ଆଜ୍ଞା

ସିଦ୍ଧ ଗୋରେଖଙ୍କର କୋଟି କୋଟି ଆଜ୍ଞା ।

ଏହିସବୁ ଆଜ୍ଞା, ଦ୍ୱାହି, ବାକ୍ୟ, ସନମତ, ସନ୍ତକ, କୀଳଣି, ବିଭୂତି, ଚକ୍ର, ମଣ୍ଡଳ ମଧ୍ୟରେ ଓଡ଼ିଶାର ବହୁ ବୃକ୍ଷ, ରୋଗ, ଫୁଲ ଓ ଧାତୁ ପ୍ରଭୃତିର ନାମ ଶୁଣିବାକୁ ମିଳେ, ଯାହାକି ଆଧୁନିକ ଯୁଗରେ ପ୍ରାୟ ଲୁପ୍ତ । ଏ ବୈଜ୍ଞାନିକ ଯୁଗରେ ସେ ସବୁ ଓଡ଼ିଆ ଶବ୍ଦର ଆବଶ୍ୟକତା ରହିଛି । ନୋହିଲେ ଗଛ ବା ରୋଗ ନା ଲାଟିନ୍‌ରେ ହିଁ କହିବାକୁ ପଡ଼ିବ । ଏହା ବ୍ୟତୀତ ଏଥିରେ ଅଛି ଅତୀତ ସଂସ୍କୃତିର କେତେକ ସଂକେତ । ଏ ଦେଶରେ ବହୁ ମହାପୁରୁଷ ଜନ୍ମଲାଭ କରିଥିଲେ ସତ, କିନ୍ତୁ ସେଥିରୁ କେତେଜଣ ନାମକରା ସିଦ୍ଧ ଥିଲେ । ସେଥିମଧ୍ୟରୁ ଏହି ଗୋଟିଏ ପୋଥିରେ ଅଛନ୍ତି, ଶ୍ରୀ ଆଦିନାଥ, ମଛେନ୍ଦ୍ରନାଥ, ମୀନନାଥ, ସିଦ୍ଧ ଗୋରେଖନାଥ, ବୀର ଚୁଡ଼ଙ୍ଗ (ଚୋଳଗଙ୍ଗ), ବୀର ନୃସିଂହ, ମୋହସିଦ୍ଧ ଶଉରୁଣୀ, ବୋଲିଗାଁମା, କିଟାଇ ମା, ପତର ଶବରୁଣୀ (ବୌଦ୍ଧ ଦେବୀ) ମହାଜାଲିଆ, ହାଡ଼ିଝିଅ, ଚଣ୍ଡୀବେଟି, ନିତେଇ ମା, ସିଦ୍ଧ ବାଉତି, ନେତାଇ ଧୋବଣୀ, ବିକାଇ କେଉଟୁଣୀ, ଶ୍ରୀ ସିଂଘ ସାହେବ, ବୀରସିଂଘ, ମାଣିକି ରାଏ, ତୁଡ଼କ ଚୂହାଣ, ଲୋଲା ଚମାର, ହରିନାଥ, ଶ୍ରୀ ବନ୍ଧ୍ୟା ଗୋସାଇଁ, ସିଦ୍ଧ ଚଉରୋଙ୍ଗୀ ପ୍ରଭୃତି ଅଲୌକିକ ପ୍ରତିଭା ସମ୍ପନ୍ନ ଐତିହାସିକ ପ୍ରସିଦ୍ଧ ବ୍ୟକ୍ତି । ପୁଣି ଏଥିରେ ଥିବା ଦେବ ଦେବୀଙ୍କ ନାମରୁ ଏ ଦେଶରେ ପ୍ରଚଳିତ ବିଭିନ୍ନ ପ୍ରକାର ଧର୍ମ-ଧାରଣାର ଏକ ସଂକ୍ଷିପ୍ତ ସୂଚନା ମିଳିଥାଏ । ସେସବୁ ଦେବତା ହେଲେ, ଆଦି, ଅନାଦି, ମହାଦେବ, ରାମ, ଲକ୍ଷ୍ମଣ, ଅନାଦି ବ୍ରହ୍ମ, ନିରଞ୍ଜନ ବ୍ରହ୍ମ, ଚଉଷଠୀ ଯୋଗ୍ନୀ, ତ୍ରିକାଳ ବଜ୍ରଧର, କାଉଁରୀ କାମଚଣ୍ଡୀ, ବୀର ହନୁମାନ, ଜଗନ୍ନାଥ ମହାପ୍ରଭୁ, ହାଡ଼ବାଇ ଦେବତୀ, ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଈଶ୍ୱର, ପାର୍ବତୀ, ବିରାଟ ବାଲୁଙ୍କିଶ୍ୱର, ରାମ ଠାକୁର, ଜଟାମୁକୁଟ, ବସୁନ୍ଧରୀ, ଚନ୍ଦ୍ର, ସୂର୍ଯ୍ୟ, ବିଲ ମହାଦେବ, ରଘୁ ରାମଚନ୍ଦ୍ର, କାନ୍ତ ଗଙ୍ଗାଧର, ସୁଦର୍ଶନ ଚକ୍ର, ଦେବୀ ବସୁମତୀ, ଧର୍ମ ନିରଞ୍ଜନ, ବାଏବରୁଣ,

ମଦାରପୁଷ୍ପ ଚଣ୍ଡୀ, କଳ୍ପଦ୍ରୁମ, ବଉଦ ଅବତାର, ଚତୁର୍ଧା ମୂରତି, ନିତ୍ୟ ରାହାସ ମଣ୍ଡଳ, ପଞ୍ଚାଶ ନବକୋଟି କାତ୍ତାୟେନୀ, ବ୍ରହ୍ମ ଦଇତ୍ୟ, ପଦ୍ମନୀ, ଗ୍ରାମଦେବତୀ, ଗ୍ରାମ ମହେଶ୍ୱରୀ, ଶମଶାନ ଚଣ୍ଡୀ, କାଳ, ବିକାଳ ପୁରୁଷ, ଶ୍ରୀ ବଡ଼ ଠାକୁର, ତେତିଶ କୋଟି ଦେବ, ମାୟାବତୀ ଠାକୁରାଣୀ, ହରିହର, ହରି ସହଦେବ, ଶଙ୍କର ଦେବ, ଶ୍ରୀ ବରଡା ବୋଲି, ବାଲୁଙ୍କେଶ୍ୱର, ସପ୍ତସୂର୍ଯ୍ୟ, ବିରଞ୍ଚିନାରାୟଣ, ବେଦପତି ବ୍ରହ୍ମା, ଶାରୋଳା, ନିରାକାର ବିଷ୍ଣୁ, ମହିସାମର୍ଦ୍ଦିନୀ, ହେମବନ୍ତ ନନ୍ଦିନୀ, ବିଂଝଗିରି ବାସେନୀ, ଗୋମାତା, ବସୁମାତା, ବନଦୁର୍ଗା, ଭଇରୋବ ବୀର, ସିଦ୍ଧ ବାଶେଳୀ, ଧର୍ମପୁରୁଷ, ଉଗ୍ରତାରା ମହାମାଈ, ନବଦୁର୍ଗା, ଡାକିନୀ, ମହାଖଳା ମହାଦେବ, ବୀର ମହାବୀର, ଶ୍ରୀ ମହାବିଷ୍ଣୁ, ଶ୍ରୀ ହେଙ୍ଗୁଳା ମାତା, ଗେଜଇନ୍ଦ୍ର ଠାକୁର, ଧୋବଳମୁଖୀ ଠାକୁର, କପାଳି, ହରି-ଅର୍ଜ୍ଜୁନ, ବାମେଶ୍ୱରୀ ପ୍ରଭୃତି । ସେହି ଗୋଟିଏ ଦେବତା ବିଭିନ୍ନ ନାମରେ କିପରି ସମାଜରେ ପ୍ରଚଳିତ ଥିଲେ, ତାହାର ସୂଚନା ମଧ ଏହିଥିରୁ ମିଳେ । ପୁରାଣ ପ୍ରସିଦ୍ଧ ବହୁ ଋଷି ମଧ ନାଥ ସିଦ୍ଧଙ୍କ ପରି ଏହି ଆଜ୍ଞାକାରମାନଙ୍କ ଦ୍ୱାରା ସମାଦୃତ ହେଉଥିଲେ । ସେଥିମଧ୍ୟରୁ ବାଲ୍ମିକୀ, ଅଙ୍ଗିରା, ଅଗସ୍ତି, ଭୃଗୁ, ପାରେଶ୍ୱର, ନାରଦ, ବିଭାଣ୍ଡକ, ଋଷିସିଂହ, ଗାଗ୍ରବ, ବଶିଷ୍ଠ, ବରେହା ପ୍ରଭୃତି ଋଷି ଥିଲେ ପ୍ରସିଦ୍ଧ । ରାମାୟଣ ଓ ମହାଭାରତର କଥା ଏ ଦେଶରେ ବହୁ ଆଦିକାଳରୁ ପ୍ରଚଳିତ । ଏ ଦେଶରେ ଯେତେ ଧର୍ମ ଓ ସଂପ୍ରଦାୟର ଉଦ୍ଭବ ହୋଇଛି, ପ୍ରାୟ ସମସ୍ତେ, କୌଣସି ନା କୌଣସି ଭାବେ ଏହି ଦୁଇ ପୁରାଣକୁ ଉଲ୍ଲେଖ କରିଛନ୍ତି । ଆଜ୍ଞା ସବୁରେ ଏହି ପୁରାଣର କେତେକ ଚରିତ୍ର ଅତି ପ୍ରସିଦ୍ଧ । ସେଥିମଧ୍ୟରୁ ରାମାୟଣର ଲକ୍ଷ୍ମଣ, ବୀର ହନୁମାନ, ରାମ ବା ଦାଶରଥି ରଘୁବୀର ଓ ମହାଭାରତର ସହଦେବ, ଦ୍ରୋଣସୁତ ଅଶ୍ୱତ୍ଥମା , ଦ୍ରୁପଦ ମହାରଜା, ପଦ୍ମନ ଭାରିଜା ମାୟାବତୀ, ପାଞ୍ଚଭାଇ ସହଦେବ, ନାଗାର୍ଜ୍ଜୁନ, ହରି-ଅର୍ଜ୍ଜୁନ-ଉଦ୍ଧବ, ସିଦ୍ଧ ଶ୍ରୀ ଶକୁନିଙ୍କର ଉଲ୍ଲେଖ ବାରମ୍ବାର ମିଳେ ।

ଗୁଣି-ଗାରୁଡ଼ିର ବିଶଦ ବିବରଣୀ ଏଠାରେ ଦେବା ସମ୍ଭବ ନହେଲେ ବି, ଏହି ସଂକ୍ଷିପ୍ତ ପରିଚୟରୁ ଏହାର ବିସ୍ତୃତି ଅନୁମାନ କରାଯାଇପାରେ । ଓଡ଼ିଶାର ଆଦିମ ଯୁଗରୁ ବିଶେଷ କରି ଅଷ୍ଟମ ଓ ନବମ ଶତାବ୍ଦୀ ଠାରୁ ଏପର୍ଯ୍ୟନ୍ତ ଦେଶରେ ପ୍ରଚାରିତ ହୋଇଥିବା ବିଭିନ୍ନ ଧର୍ମଧାରା, ସାଧନାର ସ୍ୱରୂପ, ଇତିହାସର ଲୁପ୍ତ କଥା, ନାଥ ସିଦ୍ଧଙ୍କର ଶିକ୍ଷା, ଉପଦେଶ ଓ ବାଣୀ, ବିଶ୍ୱାସର ପରଂପରା, ପ୍ରଚଳିତ ଔଷଧ ବା ରସାୟନରେ ବ୍ୟବହୃତ ବିଭିନ୍ନ ଦ୍ରବ୍ୟର ସୂଚନା ଏଥିରୁ ମିଳିଥାଏ । ଏହା ଇତିହାସ ନୁହେଁ । ତେବେ ଇତିହାସରେ ନ ମିଳୁଥିବା ବହୁ କଥା ଏଥିମଧ୍ୟରେ ଲୁକ୍କାୟିତ । ଜାତି ସାଙ୍ଗରେ ମିଶି ପାରିଲେ ଏହାର ସ୍ୱର ବାରି ହୁଏ । ଢ଼ଗ ଢମାଳି ପରି ଏହା ଚିରନ୍ତନ ଶକ୍ତିରେ ମହୀୟାନ । ଓଡ଼ିଶାର ଅତୀତ ଇତିହାସ ଓ ଜାତିର ପ୍ରକୃତ ପ୍ରାଣଧାରା ଚିହ୍ନିବାକୁ ହେଲେ, ଏସବୁର ବିସ୍ତୃତ ଅଧ୍ୟୟନ ଆବଶ୍ୟକ ।

❋

# ପରିଶିଷ୍ଟ (୧)

# ଅମରକୋଷ

ଓଡ଼ିଆ ଭାଷାର ଆରମ୍ଭ କାଳରୂପେ ନବମ ବା ଦଶମ ଶତାବ୍ଦୀ ଗ୍ରହଣ କଲେ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ କୌଣସି ସାହିତ୍ୟ ଉପଲବ୍ଧ ହୁଏ ନାହିଁ । ଏପରିକି ଓଡ଼ିଶାରୁ କୌଣସି ଅପଭ୍ରଂଶ ସାହିତ୍ୟ ମିଳେ ନାହିଁ । ଦଶମ ଶତାବ୍ଦୀରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ମିଳୁଥିବା ଶିଳାଲେଖ ସବୁ ସେ ସମୟରେ ଓଡ଼ିଆ ଭାଷାର ବିକାଶ କ୍ରମ ଆଲୋଚନା କରିବା ପାଇଁ ସାହଯ୍ୟ କରିଥାଏ । ଏଥିରୁ ଗଦ୍ୟ ଭାଷାର ସ୍ୱରୂପ ସମ୍ବନ୍ଧରେ କିଞ୍ଚିତ ସୂଚନା ମିଳୁଥିଲେ ହେଁ ପଦ୍ୟ ସାହିତ୍ୟ ସମ୍ବନ୍ଧରେ କିଛି ଜାଣିହୁଏ ନାହିଁ । ଚର୍ଯ୍ୟାପଦରେ ସଂଗୃହୀତ ପଦ ସବୁ ମଧ୍ୟରୁ କେତେକ ପଦକର୍ତ୍ତାଙ୍କୁ ଓଡ଼ିଶାର ବୋଲି କୁହାଯାଇଛି । ସେମାନଙ୍କ ଭାଷାକୁ ଓଡ଼ିଆ ଭାଷାର ଆଦି ରୂପ ରୂପେ ଗ୍ରହଣ କଲେ ଏଥିରେ ତଦ୍‌ଭବ ଶବ୍ଦରାଜିର ପ୍ରାଧାନ୍ୟ ପରିଲକ୍ଷିତ ହୁଏ, ଏଣୁ ଅନୁମାନ କରାଯାଇ ପାରେ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ରଚିତ ସାହିତ୍ୟରେ ଏହି ପ୍ରବୃତ୍ତିର ଏକଛତ୍ରାଧିକାର ଥିଲା । ପଞ୍ଚଦଶ ଶତାବ୍ଦୀରେ ରଚିତ ସାରଳା ଦାସଙ୍କ ମହାଭାରତକୁ ଅନୁଶୀଳନ କଲେ ଦେଖାଯାଏ ତଦ୍‌ଭବ ଓ ତତ୍‌ସମ ଶବ୍ଦରାଜି ସମାନ ଭାବରେ ଏଥିରେ ବ୍ୟବହୃତ । ତେଣୁ ଓଡ଼ିଆ ସାହିତ୍ୟର ଆଦିକାଳ କହିଲେ ପଞ୍ଚଦଶ ଶତାବ୍ଦୀର ପୂର୍ବ ସାହିତ୍ୟକୁ ହିଁ ବୁଝିବା ଉଚିତ । ପଞ୍ଚଦଶ ଶତାବ୍ଦୀ ପୂର୍ବରୁ କେବଳ ଓଡ଼ିଶା ନୁହେଁ, ସମସ୍ତ ଭାରତବର୍ଷରେ ଦୁଇ ପ୍ରକାର ରଚନା ପ୍ରାପ୍ତ ହୁଏ । ପ୍ରଥମ ହେଉଛି ଜୈନ ପୁସ୍ତକାଳୟ ସବୁରେ ସୁରକ୍ଷିତ ରଚନା ଏବଂ ଦ୍ୱିତୀୟ ହେଉଛି ଲୋକ ପରମ୍ପରାରେ ପ୍ରବାହିତ ହୋଇ ଆସୁଥିବା ନାଥ ସିଦ୍ଧମାନଙ୍କର ରଚନା । ଦ୍ୱିତୀୟ ଶ୍ରେଣୀର ରଚନା ମୌଖିକ ରୂପରେ ପ୍ରଚଳିତ ଥିବାରୁ ଏଥିରେ ପରିବର୍ତ୍ତନ ହେବା ସ୍ୱାଭାବିକ । ପ୍ରଥମ ଶ୍ରେଣୀର ରଚନା ରୂପେ ହେମଚନ୍ଦ୍ରଙ୍କ **ବ୍ୟାକରଣ**, ମରୁତୁଙ୍ଗଙ୍କ **ପ୍ରବନ୍ଧ ଚିନ୍ତାମଣି**, ରାଜଶେଖରଙ୍କ **ପ୍ରବନ୍ଧ କୋଷ** ପ୍ରଭୃତିରେ ସଂଗୃହୀତ ଦୋହା ଏବଂ ଦ୍ୱିତୀୟ ଶ୍ରେଣୀର ରଚନା ରୂପେ ନାଥସିଦ୍ଧମାନଙ୍କ ରଚନାବଳୀକୁ ଗ୍ରହଣ କରାଯାଇ ପାରେ । ପ୍ରଥମ ହେଉଛନ୍ତି ଏ ଦେଶର ଶାସକ । ସେତେବେଳେ ଗଙ୍ଗବଂଶୀୟ-ରାଜାମାନେ ଏ ଦେଶକୁ ଶାସନ କରୁଥିଲେ । ଇତିହାସରୁ ଯାହା ଜଣାଯାଏ ସେମାନେ ଦାକ୍ଷିଣାତ୍ୟର ଲୋକ । ଓଡ଼ିଶାର ଦକ୍ଷିଣ ଭାଗ ତେଲଗୁ ଭାଷା ଦ୍ୱାରା ଅଧ୍ୟୁଷିତ । ଓଡ଼ିଆ ସହ ଏହାର ସଂପର୍କ ଆଦୌ ନାହିଁ । ଫଳରେ ଏହି ଶାସକ-ମାନେ ଓଡ଼ିଶାର ପ୍ରଚଳିତ ଦେଶୀ ଭାଷାକୁ ପ୍ରୋତ୍ସାହନ ଦେବା ସମ୍ଭବ ନଥିଲା । ସେମାନଙ୍କ ଦରବାରରେ ସମ୍ମାନିତ ହେଉଥିବା ସଂସ୍କୃତ ପଣ୍ଡିତମାନେ ମଧ୍ୟ ଦେଶୀ ଭାଷା ଅପେକ୍ଷା ସଂସ୍କୃତ ଭାଷାର ବିଶେଷ ଆଲୋଚନା କରୁଥିଲେ । ଦେଶୀ ଭାଷାରେ ରଚିତ ସାହିତ୍ୟକୁ ରକ୍ଷା କରିବାର ମୂଳ ଦାୟିତ୍ୱ ତେଣୁ ଧର୍ମପ୍ରଚାରକ ମାନଙ୍କ ଉପରେ ନିହିତ ହେବା

ସ୍ୱାଭାବିକ । ଏହି ସମୟରେ ଓଡ଼ିଶାରେ ବିଭିନ୍ନ ଧାର୍ମିକ ସଂପ୍ରଦାୟର ବିକାଶକୁ ଲକ୍ଷ୍ୟକଲେ ଜଣାଯାଏ ଯେ ସେତେବେଳେ ସେମାନେ ପରସ୍ପର ମଧ୍ୟରେ ବାଦ ବିବାଦରେ ରତଥିଲେ । ନରହରି ତୀର୍ଥଙ୍କ ପ୍ରଚେଷ୍ଟାରେ ଓଡ଼ିଶାରେ ବୈଷ୍ଣବ ଧର୍ମକୁ ରାଜପୋଷକତା ପ୍ରାପ୍ତ ହେଲା । ଫଳରେ ଅନ୍ୟ ଧର୍ମ ସଂପ୍ରଦାୟ ସବୁ ସଂଗଠିତ ହେବାକୁ ସୁବିଧା ପାଇ ନଥିଲା । ଏପରି ପରିସ୍ଥିତିରେ ଦେଶୀ ଭାଷାରେ ରଚିତ ଗ୍ରନ୍ଥ ସବୁ କେବଳ ଲୋକ ପରମ୍ପରାରେ ବଞ୍ଚି ରହିବାକୁ ବାଧ୍ୟ ହେଲେ । ଲୋକ ପରମ୍ପରାରେ ପ୍ରଚଳିତ ସାହିତ୍ୟକୁ ପ୍ରାମାଣିକ ସାହିତ୍ୟ କୁହାଯାଇ ପାରିବ ନାହିଁ । କାରଣ ଲୋକରୁଚିର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଏ ପ୍ରକାର ରଚନା ପରିବର୍ତ୍ତିତ ହୋଇଥାଏ । ପରବର୍ତ୍ତୀ ଯୁଗରେ କେହି କେହି ଏହାକୁ ସଂଗ୍ରହ କରି ସଂପାଦିତ କରିବାକୁ ପ୍ରଚେଷ୍ଟା କରିଥିଲେ ହେଁ ସେ ସବୁର ପ୍ରାଚୀନ ରୂପ ଲୁପ୍ତ ହୋଇ ଯାଇଛି । ତେଣୁ ଏ ସବୁକୁ କୌଣସି ନିର୍ଦ୍ଦିଷ୍ଟ କାଳ ମଧ୍ୟରେ ଭାଷାତତ୍ତ୍ୱ ଦୃଷ୍ଟିରୁ ଆବଦ୍ଧ କରିହୁଏ ନାହିଁ । ଏସବୁ ସତ୍ତ୍ୱେ ସେହି ଅତୀତ ଯୁଗର ସ୍ମୃତି ଓ କାହାଣୀ ଯେ ଏଥିରେ ଲିପିବଦ୍ଧ ହୋଇ ରହିଛି ଏହା ନିଃସନ୍ଦେହ ।

ପ୍ରସ୍ତୁତ ସଂକଳନରେ ୧୪୫୦ରୁ ୧୫୫୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରାୟ ଏକଶହ ବର୍ଷ ମଧ୍ୟରେ ରଚିତ ବିଭିନ୍ନ କାବ୍ୟ କବିତା ପ୍ରକାଶିତ ହୋଇଛି । ଏଥିରେ ସଂଗ୍ରହ, ଗୀତା, ପୁରାଣ, ବ୍ୟାଖ୍ୟା, ଚଉତିଶା, ଅନୁବାଦ, କ୍ଷୁଦ୍ର କବିତା ତଥା କାବ୍ୟ ଅଛି । ପ୍ରବୃତ୍ତି ଦୃଷ୍ଟିରୁ ଏଥିରେ ଭକ୍ତି, ଜ୍ଞାନ, ଯୋଗ, ପ୍ରେମ ପ୍ରଭୃତି ଧର୍ମମାର୍ଗର ସୂଚନା ମିଳେ । ଛନ୍ଦ ଦୃଷ୍ଟିରୁ ଏଥିରେ ଦାଣ୍ଡୀବୃତ୍ତ, ଅଷ୍ଟାକ୍ଷରୀ ଏବଂ ବିଭିନ୍ନ ରାଗ ରାଗିଣୀ ଯୁକ୍ତ ପଦବନ୍ଧ ଦେଖିବାକୁ ମିଳେ । ଏହି ସମୟ ଓଡ଼ିଆ ସାହିତ୍ୟର ଆଦିକାଳକୁ ପ୍ରତିନିଧିତ୍ୱ କରୁଥିବାରୁ ଏହି ସଂକଳନ ଓଡ଼ିଆ ସୁଧୀ ପାଠକମାନଙ୍କର ଦୃଷ୍ଟି ଆକୃଷ୍ଟ କରିବ ବୋଲି ଆଶାକରେ । *

## ଅମର କୋଷ

ଏଥିରେ ସଂଗୃହୀତ ଗ୍ରନ୍ଥ ମାନଙ୍କ ମଧ୍ୟରୁ **ଅମର କୋଷ** ପ୍ରଥମ । ଏହା ନାଥ ସଂପ୍ରଦାୟର ଏକ ଅମର ଗ୍ରନ୍ଥ । ଶରୀରକୁ ଥଳି ବା କୋଷ କୁହାଯାଏ । ସେ ଦୃଷ୍ଟିରୁ ଏହାକୁ 'ଅମରକୋଷ' କୁହାଯାଉ ଥିଲେ ହେଁ ଏଥିରେ ଲୋକରେ ପ୍ରଚଳିତ ଓ ପ୍ରସିଦ୍ଧି ଲାଭ କରିଥିବା ନାଥସିଦ୍ଧମାନଙ୍କର ବାଣୀ ସଂଗୃହୀତ ହୋଇ ଥିବାରୁ କୋଷ ଆଖ୍ୟା ସମୀଚୀନ ବୋଧହୁଏ । ଉଦାହରଣ ପାଇଁ ଏଥିରୁ ଦୁଇଟି ପଦ ଉଦ୍ଧାର କରାଯାଉଛି ।

୧ । ଈଶ୍ୱର ସୁମରି ଯେଉଁ ନର ଯାଏ
ଚୋର ନ ଭେଟଇ ବ୍ୟାଘ୍ର ନ ଖାଏ
ସର୍ପଣୀ ଦେଖି ଧୂରୁ ପଳାଏ ।

---

* ପ୍ରାଚୀନ କାବ୍ୟଧାରା, ୧୯୭୬

୨। ଆଦି ରୂପେ ଆଦିନାଥ
ମାୟାମାରି ମଛନ୍ଦୀ ନାଥ
ଜ୍ଞାନ ପରପେ ଚୌରଙ୍ଗୀ ନାଥ
ଘଟ ପରଚେ ଶ୍ରୀ ଗୋରେଖ ନାଥ ।

ଏଥିରେ ଥିବା ଦୁଇଟି ପଦ ମଧ୍ୟରୁ ପ୍ରଥମ ପଦ ଲୋକୋକ୍ତି ଏବଂ ଦ୍ୱିତୀୟ ପଦ **ଗୋରଖବାନୀ** ବା **ଶିଶୁବେଦ**ରୁ ସଂଗୃହୀତ ।

ସମୟ ଦୃଷ୍ଟିରୁ ଏହା **ଶିଶୁବେଦ**ର ପରବର୍ତ୍ତୀ । କେବଳ **ଶିଶୁବେଦ**ର ପଦ ନୁହେଁ, ଏହି ଗ୍ରନ୍ଥରେ **ଶିଶୁବେଦ** ଶବ୍ଦ ମଧ୍ୟ ବ୍ୟବହୃତ । ଷୋଡ଼ଶ ଶତାବ୍ଦୀର ପ୍ରସିଦ୍ଧ କବି ବଳରାମ ଦାସ ଏଥିରେ ଆଲୋଚିତ ତତ୍ତ୍ୱରାଜିକୁ **ଅମରକୋଷ ଗୀତା** ଶୀର୍ଷକ ଗ୍ରନ୍ଥରେ ଗ୍ରହଣ କରିଥିବାରୁ ଏହି ଗ୍ରନ୍ଥକୁ ବଳରାମ ଦାସଙ୍କ ପୂର୍ବବର୍ତ୍ତୀ ଅର୍ଥାତ ପଞ୍ଚଦଶ ଶତାବ୍ଦୀରେ ରଚିତ ରଚନାରୂପେ ଗ୍ରହଣ କରାଯାଇପାରେ । ଏହାର ସମୟ ନିର୍ଦ୍ଧାରଣ କରିବା ପାଇଁ ଅନ୍ୟଏକ ସହାୟକ ଉପାଦାନ ହେଉଛି ଏଥିରେ ସନ୍ନିହିତ ହୋଇଥିବା ଗୁରୁ ବନ୍ଦନା । ଲେଖକ ଗୁରୁବନ୍ଦନା କଲାବେଳେ ହରିଶ୍ଚନ୍ଦ୍ର ଓ ଧର୍ମ ଯୁଧିଷ୍ଠିର ପ୍ରଭୃତି ପୁରାଣ ପ୍ରସିଦ୍ଧ ବ୍ୟକ୍ତିମାନଙ୍କୁ ଉଲ୍ଲେଖ କରିଥିଲେ ହେଁ କେତେକ ଐତିହାସିକ ବ୍ୟକ୍ତି ମଧ୍ୟ ଏହି ବନ୍ଦନାରେ ସ୍ଥାନ ପାଇଛନ୍ତି । ସେମାନେ ହେଉଛନ୍ତି ଗୋରେଖ, ଲୁଇପାଦ, ଶବରୀନାଥ, କଛଡ଼ିନାଥ, ଜାଳନ୍ଧର, ଗୋବିନ୍ଦଚନ୍ଦ୍ର, ତୁଷ୍ଟିକିପା, ରାଜା ନରୀନ୍ଦ୍ର, ସତ୍ୟବାଦୀ, ଚନ୍ଦ୍ରେଶ୍ୱର, ମହେନ୍ଦ୍ରନାଥ, ଚୌରଙ୍ଗୀନାଥ, ସତୀକାଣେରୀ ବା କଣିଆରୀ ପ୍ରଭୃତି ପ୍ରମୁଖ । ଏଥି ମଧ୍ୟରୁ ସତୀକାଣେରୀ ବା କଣିଆରୀ ଚତୁର୍ଦ୍ଦଶ ଶତାବ୍ଦୀର  ବ୍ୟକ୍ତିଥିବା ଆଚାର୍ଯ୍ୟ ହଜାରୀ ପ୍ରସାଦ ଦ୍ୱିବେଦୀ  ଅନୁମାନ କରିଛନ୍ତି । ସେ ଦୃଷ୍ଟିରୁ ମଧ୍ୟ **ଅମରକୋଷ**କୁ ପଞ୍ଚଦଶ ଶତାବ୍ଦୀର ରଚନାରୂପେ ଗ୍ରହଣ କରାଯାଇ ପାରେ । ଏହାର ସମୟ ନିର୍ଦ୍ଧାରଣର ଅନ୍ୟ ଗୋଟିଏ ବଳିଷ୍ଠ ପ୍ରମାଣ ହେଉଛି ଏଥିରେ ଥିବା ସଖୀ ଶବଦ ଓ ଦୋହା ଶବ୍ଦ । ବୌଦ୍ଧ ସିଦ୍ଧ କାହ୍ନପା, “ ସାଖୀ କରବ ଜାଳନ୍ଧରପାଏ ” ପଦରେ ଗୁରୁଙ୍କୁ ସାକ୍ଷୀ କରିଥିବା କଥା କହିଛନ୍ତି । ପରବର୍ତ୍ତୀ ଯୁଗରେ ଗୁରୁଙ୍କ ଉପଦେଶକୁ ସାଖୀ କୁହାଗଲା । **ଅମରକୋଷ**କାରଙ୍କ ପରି ତୁଳସୀ ଦାସ “ସାଖୀ ଶବଦୀ ଦୋହାରା” ଲେଖୁଥିବା ଲୋକମାନଙ୍କୁ ଉଲ୍ଲେଖ କରିଛନ୍ତି । ଦୋହରା ହେଉଛି ଦୋହା । ଏହା କୌଣସି ସ୍ୱତନ୍ତ୍ର ରଚନା ନୁହେଁ । ଏକ ଛନ୍ଦର ନାମ ଏବଂ ଦୋହା ଛନ୍ଦରେ ରଚିତ ପଦକୁ ସାଖୀ କୁହାଯାଏ । କବୀରଙ୍କ ରଚନାବଳୀରୁ ଏହାହିଁ ପ୍ରମାଣିତ ହୋଇଥାଏ । ସାଖୀ ରଚନା କବୀରଙ୍କ ଦ୍ୱାରା ପ୍ରସିଦ୍ଧି ଲାଭ କରିଥିଲେହେଁ ତାଙ୍କ ପୂର୍ବରୁ ପ୍ରଚଳିତ ଥିବା ଅନୁମେୟ । ଯଦି କୁହାଯାଏ **ଅମରକୋଷ**ରେ ଉଲ୍ଲିଖିତ ହୋଇଥିବା ସାଖୀ ଶବ୍ଦ କବୀରଙ୍କ ସାଖୀର ପ୍ରଭାବ ତାହାହେଲେ ମଧ୍ୟ ଏ ଗ୍ରନ୍ଥର ରଚନାକାଳ ପଞ୍ଚଦଶ ଶତାବ୍ଦୀର ପରବର୍ତ୍ତୀ ହେବନାହିଁ । ଏସବୁ ପ୍ରମାଣ ଦୃଷ୍ଟିରୁ **ଅମରକୋଷ**କୁ ପଞ୍ଚଦଶ ଶତାବ୍ଦୀର ରଚନାରୂପେ ଗ୍ରହଣ କରାଯାଇପାରେ । କଥାରେ ଅଛି -

''ଯେବେ ପଢ଼ିଥିବୁ ଅମରକୋଷ

ଆଉ ସବୁ ପାଠ ଚାଳରେ ଖୋଷ ।''

ଏହି ଲୋକୋକ୍ତି ବୋଧହୁଏ ପ୍ରଥମେ ସଂସ୍କୃତ ଭାଷାର ପ୍ରସିଦ୍ଧ ଅଭିଧାନ **ଅମରକୋଷ** ପାଇଁ ସୃଷ୍ଟି ହୋଇଥିଲା । କିନ୍ତୁ ଯେତେବେଳେ ସଂସ୍କୃତରେ ପାଣ୍ଡିତ୍ୟ ଅର୍ଜନ କରିବା ଅପେକ୍ଷା ବ୍ରହ୍ମବିଦ୍ୟାରେ ପାରଦର୍ଶୀ ହେବାପାଇଁ ମଧ୍ୟକାଳୀନ ସନ୍ଥମାନେ ବାରମ୍ବାର ଘୋଷଣାକଲେ ସେତେବେଳେ ଶରୀର ସାଧନାକୁ ବର୍ଣ୍ଣନା କରୁଥିବା ଅମରକୋଷର ସୃଷ୍ଟି ହୁଏ । ଓଡ଼ିଆରେ **ପଞ୍ଚଦଶ ଶତାବ୍ଦୀର ଅମରକୋଷ** ବ୍ୟତୀତ ଷୋଡ଼ଶ ଶତାବ୍ଦୀର ରଚିତ ବଳରାମ ଦାସଙ୍କ **ଅମରକୋଷ** ଗୀତା, ଗଦ୍ୟରେ ରଚିତ **ଅମରକୋଷ** ଓ ଦୈବଜ୍ଞ ବଳରାମଙ୍କ ରଚିତ **ଅମରକୋଷ** ଦେଖିବାକୁ ମିଳେ । ଏସବୁ ଗ୍ରନ୍ଥରେ ମଧ୍ୟ ପ୍ରଥମ **ଅମରକୋଷ**ପରି କାୟାସାଧନାର ମାର୍ଗ ଆଲୋଚିତ ।

**ଅମରକୋଷ**କାର ଟଳମଟଳ କାୟାକୁ ନିର୍ବାଣ କରିବା ପାଇଁ ଶରୀରରେ ଥିବା ବିଭିନ୍ନ ସନ୍ଧି ସ୍ଥାନର ବର୍ଣ୍ଣନା କରିଛନ୍ତି । ଏହା ତଳିପାଠାରୁ ତାଳୁ ପର୍ଯ୍ୟନ୍ତ ବ୍ୟାପ୍ତ । ହୃଦୟ ଚକ୍ର ଉପରେ ପରମାତ୍ମା ଯେଉଁ ସ୍ଥାନରେ ପ୍ରାଣଲିଙ୍ଗକୁ ଘେନି ପ୍ରଜ୍ୱଳିତ ହେଉଥାଏ, ତାହାହିଁ ହେଉଛି ଅମର କୋଷର ଥଳି । ତଳିପାଠାରୁ ତାଳୁ ମଧ୍ୟରେ ସମସ୍ତ ବିଶ୍ୱ ପ୍ରକାଶ ଲାଭ କରୁଥିବା ତତ୍ତ୍ୱ ନାଥଧର୍ମରେ ପିଣ୍ଡବ୍ରହ୍ମାଣ୍ଡବାଦ ନାମରେ ପ୍ରସିଦ୍ଧ । ପିଣ୍ଡକୁ ବ୍ରହ୍ମାଣ୍ଡ ବୁଝି ସାଧକ ଶରୀରରେ ଥିବା କୁଣ୍ଡଳୀ ସହିତ ମତ୍ତ ହୋଇପାରିଲେ ଶୁଷ୍କ କାୟା ବୃଷାଳ ହୁଏ । ସେତେବେଳେ ସାଧକ ଯେଉଁ ମହାସୁଖ ବା ମହାନନ୍ଦ ଲାଭକରେ ତାହାରି ବର୍ଣ୍ଣନା କରିବା **ଅମରକୋଷ**ର ଲକ୍ଷ୍ୟ ।

**ଅମରକୋଷର** ବିଷୟ ବସ୍ତୁ ଅତି ବିସ୍ତୃତ । ଯୋଗ ମାର୍ଗ ଦୃଷ୍ଟିରୁ ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ପରିଚୟ କରାଇବା ସଙ୍ଗେ ସଙ୍ଗେ ଶରୀର ସାଧନାପାଇଁ ଆବଶ୍ୟକ ହେଉଥିବା ମନ୍ତ୍ର, ଔଷଧ, ଦାନ ପ୍ରଭୃତିର ବର୍ଣ୍ଣନା ଏଥିରୁ ମିଳିଥାଏ । ନାଥ ଧର୍ମଦୃଷ୍ଟିରୁ ଲେଖକ ଗୁରୁଶିଷ୍ୟବାଦ, ପିଣ୍ଡବ୍ରହ୍ମାଣ୍ଡବାଦ, ଯୋଗଯୁକ୍ତ ଜ୍ଞାନର ବର୍ଣ୍ଣନା କରିଛନ୍ତି । ନାଥମାନଙ୍କପରି ସେ ନାରୀକୁ ଯୋଗସାଧନାରେ ବାଧକ ରୂପେ ଗ୍ରହଣ କରିଛନ୍ତି ।ଗୋରଖନାଥ ନାରୀକୁ 'ଭଗ ରାକ୍ଷସିନୀ', ବାଘୁଣୀ, ସର୍ପିଣୀ ପ୍ରଭୃତି କହିବାପରି **ଅମରକୋଷ**କାର ନାରୀକୁ ଦିନରେ ସୁନ୍ଦରୀ ଓ ରାତିରେ ନିଶାଚରୀ କହିଛନ୍ତି । କାଳବେଳରେ ସେ ଆସେ ଓ ପୁରୁଷକୁ ଆଲିଙ୍ଗନ କରି ଅବ୍ୟୟ କନ୍ଦର୍ପକୁ ଧ୍ୱଂସକରେ । ସେଥିପାଇଁ ସ୍ତ୍ରୀକୁ ବିଶେଷ କରି ତା'ର ଆଖିକୁ ଚାହିଁବା ଅନୁଚିତ । ଆଖିରେ ମଦନ ଦେବତା ମୂର୍ତ୍ତିବନ୍ତ ହୋଇ ବସିଛି । ସେ ଦିନରେ ମୋହେ ଓ ରାତ୍ରିରେ ଦହେ । ନାରୀମାୟା ବ୍ରହ୍ମାଙ୍କୁ ମଧ୍ୟ ଅଗୋଚର । ସେ ପିଣ୍ଡର ବୈରୀ ଓ ତପର ନାଶକ ।

ଭାଷାଦୃଷ୍ଟିରୁ **ଅମରକୋଷ**ରେ ବହୁ ପ୍ରାଚୀନତା ଦେଖିବାକୁ ମିଳେ । ସେଥିମଧ୍ୟରୁ କୁ ପ୍ରତ୍ୟୟ ସ୍ଥଳରେ କିଂର ପ୍ରୟୋଗ ବହୁଳ । ଉଦାହରଣ ପାଇଁ ମେ କିଂ, ପାଦ କିଂ, ଉପର କିଂ,

ତହିର କିଂ, ପଛ କିଂ, ତାଙ୍କ କିଂ ପ୍ରଭୃତି ପ୍ରୟୋଗକୁ ଗ୍ରହଣ କରାଯାଇପାରେ । ଆଉ ଗୋଟିଏ ପ୍ରାଚୀନ ପ୍ରୟୋଗ ହେଉଚି କ୍ରିୟାର 'କ' ପ୍ରତ୍ୟୟ । 'କ'ପ୍ରତ୍ୟୟ ଯୋଗ କରି ହୋଇବାକ ପାଡ଼ିଲାକ, ଦେବାକ ପ୍ରଭୃତି ଶବ୍ଦର ସୃଷ୍ଟି କରାଯାଇଛି । 'ଇ' ପ୍ରତ୍ୟୟ ଯୋଗକରି ମାନଇ, କଲଇଁ, ତାହାଇଂ, ଉଜାଣଇଂ ପ୍ରଭୃତିର ବ୍ୟବହାର ଅଛି । ବହୁବଚନ ପାଇଁ 'ନ୍ତ' ପ୍ରତ୍ୟୟର ଉଦାହରଣ ରୂପେ ଦେବୀନ୍ତ, ବେଦସାହାସ ମାନନ୍ତ ପ୍ରଭୃତି ଗ୍ରହଣ କରାଯାଇପାରେ । 'ସି' ପ୍ରତ୍ୟୟର ଉଦାହରଣରୂପେ ଜାଣିଥାସି, ଥାସି, ଶୁଣସି ପ୍ରଭୃତି ଦେଖିବାକୁ ମିଳେ । ଏହା ବ୍ୟତୀତ ଭାଇସନ୍ତି, ପିବନ୍ତି, ଦୁହିନ୍ତୁ, ଭୁଅ, ମୟେ, ନୁଅରଇ, ଉପଲେଶ, ଉଚ୍ଛମାନ, ବଅଇ ତଳେ, ପେଷିଲା ପ୍ରଭୃତି ପ୍ରାଚୀନ ଶବ୍ଦର ପ୍ରୟୋଗ ପ୍ରାଚୀନତାର ପ୍ରମାଣ ପାଇଁ ପ୍ରକୃଷ୍ଟ ଉଦାହରଣ । **ଅମରକୋଷ**କାର ସାଧାରଣ ପାଣ୍ଡିତ୍ୟଠାରୁ ବ୍ରହ୍ମଜ୍ଞାନକୁ ସ୍ୱତନ୍ତ୍ର ଭାବରେ ବିଚାର କରିଛନ୍ତି । ତାଙ୍କ ମତରେ ପିଣ୍ଡଜ୍ଞାନ ହେଉଛି ପ୍ରକୃତ ଜ୍ଞାନ । ସାଖୀ ଶବଦ ଘୋଷି ସାଧାରଣରେ ପ୍ରକାଶ କରୁଥିବା ପାଣ୍ଡିତ୍ୟ ଖଣ୍ଡଜ୍ଞାନର ପରିଚାୟକ । ଯେଉଁ ବ୍ୟକ୍ତି ଅନର୍ଗଳ କଥା କହିପାରେ ତାକୁ ଦେବୀ ସାଧକ କୁହାଯାଇପାରେ । ଏହା ପିଣ୍ଡଜ୍ଞାନ ବା ବ୍ରହ୍ମଜ୍ଞାନଠାରୁ ସ୍ୱତନ୍ତ୍ର । ଏକମାତ୍ର ପିଣ୍ଡଜ୍ଞାନ କଞ୍ଚା ପିଣ୍ଡକୁ ପାକଲା କରିବାରେ ସାହାଯ୍ୟ କରେ । ତେଣୁ ଶରୀର ସାଧନା ଜ୍ଞାନ ବା ବ୍ରହ୍ମଜ୍ଞାନ ହେଉଛି ପ୍ରକୃତ ଜ୍ଞାନ । **ଅମରକୋଷ**ରେ ଏହାହିଁ ପ୍ରତିପାଦ୍ୟ ବିଷୟବସ୍ତୁ ।

## ଗୋରେଖ ନାଥ

ଗୋରେଖ ନାଥଙ୍କ ସମୟ ଦଶମ ବା ଏକାଦଶ ଶତାବ୍ଦୀ । ସମସ୍ତ ଭାରତବର୍ଷରେ ସେ ଜଣେ ଖ୍ୟାତନାମା ସିଦ୍ଧ । ପ୍ରାୟ ପ୍ରତ୍ୟେକ ଭାରତୀୟ ଭାଷାରୁ ତାଙ୍କ ସମ୍ବନ୍ଧରେ କିଛି ନାଁ କିଛି ଉପାଦାନ ଉପଲବ୍ଧ ହୁଏ । ସେ ଓଡ଼ିଆ ଭାଷାରେ କବିତା ଲେଖିଥିଲେ କି ନାହିଁ ଜାଣିବା ପାଇଁ ନିର୍ଦ୍ଦିଷ୍ଟ ଭାବେ କୌଣସି ପ୍ରମାଣ ନଥିଲେ ହେଁ ତାଙ୍କର ବାଣୀ ଯେ ଓଡ଼ିଆ ସାହିତ୍ୟକୁ ବହୁଭାବେ ପ୍ରଭାବିତ କରିଥିଲା, ଏଥିରୁ ବହୁ ଉଦାହରଣ ଓଡ଼ିଆ ସାହିତ୍ୟରୁ ମିଳିଥାଏ । ସଂଗୃହୀତ କବିତା ସବୁ ଏହି ପରମ୍ପରାର ବାହକ । ଏ ଦେଶରେ ବୈଷ୍ଣବ ଧର୍ମ ପ୍ରଚାରିତ ହେବା ପୂର୍ବରୁ ନାଥଧର୍ମ ପ୍ରଭାବିତ ସାହିତ୍ୟ ହିଁ ଲୋକପ୍ରିୟ ଥିଲା ।

*(ଆଂଶିକ, **ପ୍ରାଚୀନ କାବ୍ୟଧାରା**)*



# ପରିଶିଷ୍ଟ - ୨
# ସିଦ୍ଧାଚାର୍ଯ୍ୟଙ୍କ ପରିଚୟ

### କଛଡ଼ୀନଥ

ନାଥ ପରଂପରାରେ କଛଡ଼ୀନାଥ ହେଉଛନ୍ତି ଗୋରଖନାଥଙ୍କ ଏକ ଶିଷ୍ୟ । 'ପ୍ରବନ୍ଧ ଚିନ୍ତାମଣି'ରୁ ୟାଙ୍କ ସମ୍ବନ୍ଧରେ ନିମ୍ନଲିଖିତ କଥା ମିଳିଥାଏ । ଚାଲୁକ୍ୟ ବଂଶର, ମୂଳରାଜ ନାମକ ରାଜା, ମୂଳେଶ୍ୱର ନାମକ ଏକ ଶିବମନ୍ଦିର ନିର୍ମାଣ କରିଥିଲେ । ଏଥିରେ ପୂଜିତ ହେଉଥିବା ଶିବ ରାଜାଙ୍କ ଉପରେ ସନ୍ତୁଷ୍ଟ ହୋଇ ଅଣହିଲ୍ଲପୁର ନାମକ ସ୍ଥାନରେ ଅବତୀର୍ଣ୍ଣ ହେବାକୁ ଇଚ୍ଛା ପ୍ରକାଶ କଲେ । ସେଥିପାଇଁ ରାଜା ''ତ୍ରିପୁରୁଷ ପ୍ରାସାଦ'' ନାମକ ଏକ ମନ୍ଦିର ନିର୍ମାଣ କଲେ । ଏହି ମନ୍ଦିରର ପରିଚାଳନା ପାଇଁ ରାଜା ବହୁଳୀ ନାମକ ଶୈବ ସିଦ୍ଧଙ୍କୁ ପ୍ରାର୍ଥନା କରିଥିଲେ । ଯେତେବେଳେ ରାଜା ତାଙ୍କସହ ସାକ୍ଷାତ କଲେ ସେତେବେଳେ ସେ ଜ୍ୱର ରୋଗରେ ପ୍ରପୀଡ଼ିତ ଥିଲେ । ରାଜାଙ୍କ ସହ ସାକ୍ଷାତ କରିବାପାଇଁ କଛଡ଼ୀନାଥ ନିଜଦେହରୁ ଜ୍ୱରକୁ ଓହ୍ଲାଇ ଦେଇ ନିଜ ଶରୀରରେ ଆବୃତଥିବା କନ୍ଥା ଉପରେ ସଂକ୍ରମିତ କରିଦେଲେ । କନ୍ଥା ଥରିବାକୁ ଲାଗିଲା । ସେଥିପାଇଁ ତାଙ୍କୁ କଛଡ଼ୀନାଥ କୁହାଯାଏ । ପ୍ରବନ୍ଧ ଚିନ୍ତାମଣିରେ ଏହାଙ୍କୁ ଶୈବସିଦ୍ଧ ରୂପେ ବର୍ଣ୍ଣନା କରାଯାଇଥିଲେ ହେଁ ସେ ଦଶମ ଶତାବ୍ଦୀର ଏକ ନାଥ ସିଦ୍ଧ ଥିବା ଏବଂ ଗୋରଖ ନାଥଙ୍କ ଶିଷ୍ୟଥିବା ଅନୁମାନ କରାଯାଇଛି ।

### ଗମ୍ଭୀରନାଥ

ଅମର କୋଷରେ ଗହୀର ଓ ଗମ୍ଭୀର ଶବ୍ଦ ସ୍ୱତନ୍ତ୍ର ଭାବେ ଦେଖିବାକୁ ମିଳେ । ଗହୀର ଗମ୍ଭୀରର ବିଶେଷଣ ହୋଇପାରେ, ଅର୍ଥାତ୍ ଗହୀର ବା ଗଭୀର ଜ୍ଞାନଥିବା ଗମ୍ଭୀରନାଥ ବା ଗାହୀନା ନାଥର ଏହା ବିକୃତ ରୂପ । ନାଥ ପରଂପରାରେ ସେ ଗୋରଖପୁରର ପ୍ରସିଦ୍ଧ ସିଦ୍ଧ ଭାବରେ ପରିଚିତ ଏବଂ ତାଙ୍କ ମହିମା କୀର୍ତ୍ତନକରି 'ଗମ୍ଭୀରନାଥ ପ୍ରସଂଗ' ଶୀର୍ଷକ ଏକ ଗ୍ରନ୍ଥ ରଚିତ ହୋଇଛି ।

### ଗୋବିନ୍ଦଚନ୍ଦ୍ର :

ଗୋବିନ୍ଦଚନ୍ଦ୍ର ବୋଧହୁଏ ଭାରତବର୍ଷରେ ପ୍ରସିଦ୍ଧିଲାଭ କରିଥିବା 'ଗୋବିନ୍ଦଚନ୍ଦ୍ର ଉପାଖ୍ୟାନ'ର ନାୟକ । ଏହାଙ୍କ ସମୟ ତ୍ରୟୋଦଶ ଶତାବ୍ଦୀ ଥିବା ଆଲୋଚକମାନେ ମତ ଦେଇଛନ୍ତି ।

## ଗୋରଖନାଥ

ମତ୍ସ୍ୟେନ୍ଦ୍ର ନାଥଙ୍କର ପ୍ରଧାନ ଶିଷ୍ୟଭାବେ ଗୋରଖନାଥ ପ୍ରସିଦ୍ଧ। ମତ୍ସ୍ୟେନ୍ଦ୍ର ଓ ଗୋରକ୍ଷ ସମ୍ବାଦ ଶୈଳୀରେ ରଚିତ ବହୁଗ୍ରନ୍ଥ ଓଡ଼ିଶା ତଥା ଭାରତର ଅନ୍ୟାନ୍ୟ ଅଞ୍ଚଳରେ ପ୍ରାପ୍ତ ହୁଏ । ଗୋରଖନାଥଙ୍କ ସମୟ ନିର୍ଦ୍ଦେଶ କରିବାକୁ ଯାଇ ସମାଲୋଚକମାନେ ବହୁ ପ୍ରକାର ମତ ପ୍ରଦାନ କରିଛନ୍ତି । ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀ ଠାରୁ ଆରମ୍ଭ କରି ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ସମୟକୁ ତାଙ୍କର ଆବିର୍ଭାବ କାଳ ରୂପେ ନିର୍ଦ୍ଦିଷ୍ଟ କରାଯାଇଛି । ଦଶମ ଶତାବ୍ଦୀରେ ପ୍ରସିଦ୍ଧ କାଶ୍ମୀର ଦେଶୀୟ ଆଚାର୍ଯ୍ୟ ଅଭିନବ ଗୁପ୍ତଙ୍କ ତନ୍ତ୍ରଲୋକରେ ମତ୍ସ୍ୟେନ୍ଦ୍ରନାଥଙ୍କ ବନ୍ଦନା ଉପରେ ନିର୍ଭରକରି ଗୋରଖନାଥଙ୍କ ସମୟ ଦଶମ ଶତାବ୍ଦୀ ଥିବା ନିର୍ଦ୍ଦିଷ୍ଟ କରାଯାଇଛି । ହିନ୍ଦୀସାହିତ୍ୟରେ ଗୋରଖନାଥଙ୍କ ନାମରେ ପ୍ରଚଳିତ ବହୁ ରଚନା ଉପଲବ୍ଧ ହୁଏ । ଡକ୍ଟର ପୀତାମ୍ବର ଦତ୍ତ ବଡ଼ଥ୍ୱାଲ ୪୦ଟି ପୁସ୍ତକ ସଂଗ୍ରହ କରିଛନ୍ତି । ସେସବୁ ହେଉଛି, (୧) ଶବ୍ଦ, (୨)ପଦ, (୩)ଶିଷ୍ୟଦର୍ଶ,(୪)ପ୍ରାଣ ସଂକଳୀ, (୫) ନରବୈବୋଧ, (୬) ଆତ୍ମବୋଧ, (୭) ଅଭୟ ମାତ୍ରାଯୋଗ, (୮) ପନ୍ଦ୍ରହତିଥି ,(୯) ସପ୍ତବାର, (୧୦) ମଛିନ୍ଦ୍ର, ଗୋରଖବୋଧ, (୧୧) ରୋମାଳୀ, (୧୨) ଜ୍ଞାନ ତିଳକ, (୧୩) ଜ୍ଞାନ ଚଉତିଶା, (୧୪) ପଞ୍ଚମାତ୍ର, (୧୫) ଗୋରେଖ ଗଣେଶଗୋଷ୍ଠୀ, (୧୬) ଗୋରେଖଦତ୍ତ ଗୋଷ୍ଠୀ, (୧୭) ମହାଦେବ ଗୋରେଖ ଗୋଷ୍ଠୀ, (୧୮) ଶିଷ୍ଟ ପୁରାଣ, (୧୯) ଦୟାବୋଧ, (୨୦) ଜାତିବମଂରାବଳୀ, (୨୧) ନବଗ୍ରହ, (୨୨) ନବରାଶି, (୨୩) ଅଷ୍ଟପାରକ୍ଷୟ, (୨୪) ରସରାହ, (୨୫) ଜ୍ଞାନମାଳା, (୨୬) ଆତ୍ମବୋଧ, (୨୭) ବ୍ରତ, (୨୮) ନିରଜନ ପୁରାଣ, (୨୯) ଗୋରେଖ ବଚନ, (୩୦) ଇନ୍ଦ୍ରିୟ ଦେବତା, (୩୧) ମୂଳଗର୍ଭାବଳୀ, (୩୨) ବାଣୀ, (୩୩) ଗୋରେଖ ସତ, (୩୪) ଅଷ୍ଟମୁଦ୍ରା, (୩୫) ଚବିଶ ସିଦ୍ଧି,(୩୬) ଷଡ଼କ୍ଷରୀ, (୩୭) ପଞ୍ଚଅଗ୍ନି, (୩୮) ଅଷ୍ଟଚକ, (୩୯) ଅବଳିସିଲୁକ ଓ (୪୦) କାଫିଂର ବୋଧ । ଏଥିରୁ ପ୍ରଥମ ଚଉଦ ଗ୍ରନ୍ଥକୁ ଡ଼କ୍ଟର ବଡ଼ଥ୍ୱାଲ ପ୍ରାମାଣିକ ରୂପେ ଗ୍ରହମ କରିଛନ୍ତି । ଗୋରଖ ନାଥଙ୍କ ନାମରେ ବହୁ ସଂସ୍କୃତ ଗ୍ରନ୍ଥ ମଧ ପ୍ରଚଳିତ । ସେଥିରୁ (୧) ଅଉନସ୍କ, (୨) ଅମରୌଘ ଶାସନମ୍, (୩) ଅବଧୂତଗୀତା, (୪) ଗୋରକ୍ଷକଳ୍ପ, (୫) ଗୋରକ୍ଷ କୌମୁଦୀ, (୬) ଗୋରକ୍ଷଗୀତା, (୭) ଗୋରକ୍ଷ ଚିକିତ୍ସା ଗୋରକ୍ଷ ଶାସ୍ତ୍ର, (୮) ଗୋରକ୍ଷ ସଂଚୟ, (୯) ଗୋରକ୍ଷ ପଦ୍ଧତି, (୧୧) ଗୋରକ୍ଷ ଶତକ, (୧୨) ଗୋରକ୍ଷ ସଂହିତା, (୧୩) ଚତୁର ସିତ୍ୟାୟନ, (୧୪) ଜ୍ଞାନପ୍ରକାଶ ଶତକ, (୧୫) ଜ୍ଞାନ ଶତକ, (୧୬) ଜ୍ଞାନାମୃତଯୋଗ, (୧୭) ନାଡ଼ୀଜ୍ଞାନ ପ୍ରଦୀପିକା, (୧୮) ମହାର୍ଥ ମଞ୍ଜରୀ, (୧୯) ଯୋଗ ଚିନ୍ତାମଣି ,(୨୦) ଯୋଗ ମାର୍ତ୍ତଣ୍ଡ, (୨୧) ଯୋଗବୀଜ, (୨୨) ଯୋଗ ଶାସ୍ତ୍ର ଓ (୨୩) ଯୋଗ ।

ଗୋରଖନାଥ ତାଙ୍କ ସାଧନା ପାଇଁ ସମସ୍ତ ଦେଶରେ ପ୍ରସିଦ୍ଧ ଲାଭ କରି ଥିବାରୁ ତାଙ୍କର ବାଣୀ ସବୁ ଓଡ଼ିଶାରେ ସଂଗୃହୀତ ହୋଇ ଓଡ଼ିଆ ରୂପ ଧାରଣ କରିଥିବା ବିଚିତ୍ର ନୁହେଁ ।

## ଚୌରଙ୍ଗୀନାଥ

ଚୌରଙ୍ଗୀନାଥ ମତ୍ସେନ୍ଦ୍ରନାଥଙ୍କ ଶିଷ୍ୟ ଓ ଗୋରଖନାଥଙ୍କ ଗୁରୁଭାଇ ଥିଲେ । କଥିତ ଅଛି ତାଙ୍କ ସାବତମାଙ୍କ ଦ୍ୱାରା ସେ ଅପମାନିତ ହୋଇଥିଲେ ଏବଂ ତାଙ୍କ ହାତଗୋଡ଼ କାଟି ଦିଆଯାଇଥିଲେ ହେଁ ସେ ଜ୍ଞାନଯୋଗରେ ପରମ ସିଦ୍ଧ ପୁରୁଷ ଥିଲେ । ତାଙ୍କଦ୍ୱାରା ରଚିତ ପ୍ରାଣ ସଂକଳି ଜୈନଗ୍ରନ୍ଥ ଭଣ୍ଡାରରେ ସୁରକ୍ଷିତ । ସେ ରାଜା ଶାଲବାହାନଙ୍କ ପୁତ୍ର ଥିଲେ । ପ୍ରାଣ ସଂକଳି ଭାଷା ଉପରେ ନିର୍ଭର କରି ହଜାରୀ ପ୍ରସାଦ ଦ୍ୱିବେଦୀ ତାଙ୍କୁ ପୂର୍ବଦେଶୀୟ ସିଦ୍ଧ ଥିବା କଥା କହିଛନ୍ତି ।

## ଜାଳନ୍ଧରୀ ପାଦ

ଜାଳନ୍ଧର ନାଥ ମତ୍ସେନ୍ଦ୍ରନାଥ ଓ ଗୋରଖନାଥଙ୍କ ପରି ପ୍ରସିଦ୍ଧ ବ୍ୟକ୍ତି । ଜାଳନ୍ଧର ନାଥ ଔଘଡ଼ ଥିଲେ । ଅଥଚ ମତ୍ସେନ୍ଦ୍ରନାଥ ଓ ଗୋରଖନାଥଙ୍କୁ 'କନଫଟା' କୁହାଯାଉଥିଲା । କାନକୁ ଚିରି ମୁଦ୍ରା ଧାରଣ କରିବା ପରେ ଯୋଗୀମାନଙ୍କୁ କାନଫଟା କୁହାଯାଏ ଏବଂ ଏହି ଅବସ୍ଥା ପୂର୍ବରୁ ସେମାନଙ୍କୁ ଔଘଡ଼ କୁହାଯାଏ । **ଅମରକୋଷ**ରେ ସେ ଜ୍ଞାନତତ୍ତ୍ୱର ପ୍ରବକ୍ତା ଭାବରେ ପରିଚିତ ।

## ତୁଷ୍ଟିକପା

ନାଥ ପରମ୍ପରାରେ ୮୪ ସିଦ୍ଧ ପ୍ରସିଦ୍ଧ । ସେମାନଙ୍କ ମଧ୍ୟରେ ତୁଷ୍ଟିକପାଙ୍କ ନାମ ଉପଲବ୍ଧ ହୁଏ ନାହିଁ । ତେଣୁ ପରବର୍ତ୍ତୀ ଯୁଗରେ ସିଦ୍ଧିଲାଭ କରିଥିବା ସତୀ କାଣେରିଙ୍କ ପରି ତୁଷ୍ଟିକପା ଅନ୍ୟ ଜଣେ ସିଦ୍ଧ ।

## ଧର୍ମଯୁଧିଷ୍ଠିର ଓ ହରିଶ୍ଚନ୍ଦ୍ର

ଅମରକୋଷର ବନ୍ଦନା ଅଂଶରେ ପୁରାଣରେ ପ୍ରସିଦ୍ଧ ଯୁଧିଷ୍ଠିରଙ୍କୁ ବୋଧହୁଏ ତାଙ୍କ ଧର୍ମପାଳନ ପାଇଁ ବନ୍ଦନା କରାଯାଇଛି ।

## ନରିନ୍ଦ୍ର

ନରିନ୍ଦ୍ରଦେବ ନେପାଳର ଶୈବ-ବୌଦ୍ଧ ପରମ୍ପରାରେ ପ୍ରସିଦ୍ଧ ନରପତି । ବୌଦ୍ଧ ପରମ୍ପରାରେ ମତ୍ସ୍ୟେନ୍ଦ୍ରନାଥଙ୍କୁ ଦର୍ଶନ କରିବା ପାଇଁ ନେପାଳ ଯାଇଥିଲେ । ସେତେବେଳେ ମତ୍ସ୍ୟେନ୍ଦ୍ରନାଥ କୌଣସି ଉଚ୍ଚ ପର୍ବତ ଉପରେ ବାସ କରୁଥିଲେ । ସେହି ପର୍ବତ ଉପରେ ଆରୋହଣ ଅସମ୍ଭବ ଦେଖି ଗୋରେଖନାଥ ନ' ନାଗଙ୍କୁ ବାନ୍ଧି ସମାଧିସ୍ଥ ହେଲେ । ଫଳରେ ନେପାଳରେ ବର୍ଷା ହେଲା ନାହିଁ । ସେତେବେଳେ ନେପାଳର ରାଜା ଥିଲେ ନରେନ୍ଦ୍ରଦେବ ଓ ତାଙ୍କର ଗୁରୁ ବୁଦ୍ଧଦତ୍ତ । ସେ ଗୁରୁଙ୍କ ପାଖରେ ଶରଣାପନ୍ନ ହେଲେ । ବୁଦ୍ଧଦତ୍ତ ଏହାର କାରଣ ଅନୁସନ୍ଧାନ କରି ଅବଲୋକିତେଶ୍ୱରଙ୍କୁ ଆଣିବା ପାଇଁ କପୋତକ ପର୍ବତକୁ ଗଲେ । ଅବଲୋକିତେଶ୍ୱର ତାଙ୍କୁ ଏକ ମନ୍ତ୍ର ପ୍ରଦାନ କଲେ । ସେହି ମନ୍ତ୍ର ଜପ କଲେ ଅବଲୋକିତେଶ୍ୱର ନିଶ୍ଚିତ ଭାବେ ଆବିର୍ଭୂତ ହେବେ । ବୁଦ୍ଧଦତ୍ତ ନେପାଳକୁ ଫେରିଆସି ଜପ ଆରମ୍ଭ କଲେ । ଅବଲୋକିତେଶ୍ୱର ଭୃଙ୍ଗ ରୂପରେ ବୁଦ୍ଧଦତ୍ତଙ୍କ କମଣ୍ଡଳୁ ମଧ୍ୟରେ ପ୍ରବେଶ କଲେ । ସେତେବେଳକୁ ରାଜା ନରେନ୍ଦ୍ର ଦେବ ଶୋଇ ଯାଇଥିଲେ । ଏକଥା ଦେଖି ବୁଦ୍ଧଦତ୍ତ ରାଜାଙ୍କୁ ପାଦପ୍ରହାରଦ୍ୱାରା ଜାଗ୍ରତ କରାଇଲେ ଏବଂ କମଣ୍ଡଳୁ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲେ । ଫଳରେ ଅବଲୋକିତେଶ୍ୱର ନେପାଳରୁ ଆଉ ଫେରିଯାଇ ପାରିଲେ ନାହିଁ ଏବଂ ନେପାଳରେ ବର୍ଷା ହେବାକୁ ଆରମ୍ଭ କଲା । ସେହିଦିନଠାରୁ 'ବୁଗମ' ନାମକ ସ୍ଥାନରେ ମତ୍ସ୍ୟେନ୍ଦ୍ରନାଥଙ୍କ ଯାତ୍ରା ହୋଇଥାଏ ।

## ଲୁଇପାଦ

ନାଥ ପରମ୍ପରାରେ ଆଦିନାଥଙ୍କ ପରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଆଚାର୍ଯ୍ୟ ହେଉଛନ୍ତି ମତ୍ସ୍ୟେନ୍ଦ୍ରନାଥ । ଯୋଗୀ ସଂପ୍ରଦାୟରେ ସେ ମଚ୍ଛିନ୍ଦର ବା ମଚ୍ଛିନ୍ଦ୍ରନାଥ ଭାବରେ ପ୍ରସିଦ୍ଧ । ମତ୍ସ୍ୟେନ୍ଦ୍ରନାଥଙ୍କୁ ଅନେକ ସ୍ଥଳରେ ମୀନନାଥ କୁହାଯାଇଛି । କେହି କେହି ବୌଦ୍ଧ ସହଜ ଯାନୀ ପରମ୍ପରାର ଆଦି ସିଦ୍ଧ ଲୁଇପାଦଙ୍କୁ ମତ୍ସ୍ୟେନ୍ଦ୍ରନାଥ କହିଛନ୍ତି । **ଅମରକୋଷ**ରେ ଲୁଇ ବା ଲୁଇପାଦ ହେଉଛନ୍ତି ଶ୍ରୋତା, ଏବଂ ଆଦିନାଥ ହେଉଛନ୍ତି ବକ୍ତା । ଆଦିନାଥଙ୍କ ପରେ ଲୁଇପାଦଙ୍କୁ ପ୍ରାଧାନ୍ୟ ଦିଆଯାଇଥିବାରୁ ଏହି ପରମ୍ପରାର ସେ ଦ୍ୱିତୀୟ ବ୍ୟକ୍ତି ଥିବା ଅନୁମେୟ । ଗ୍ରନ୍ଥ ମଧ୍ୟରେ ମତ୍ସ୍ୟେନ୍ଦ୍ରନାଥଙ୍କୁ ସ୍ୱତନ୍ତ୍ର ଭାବରେ ମଧ୍ୟ ଉଲ୍ଲେଖ କରାଯାଇଛି । ତିବ୍ବତୀ ମତରେ ଲୁଇପାଦ ଉଡ୍‌ଡ୍ରୀୟାନବାସୀ ଏବଂ ଉଡ୍‌ଡ୍ରୀୟାନ ରାଜାଙ୍କ କର୍ମଚାରୀ ଥିଲେ । ତାଙ୍କ ନାମ ପୂର୍ବରୁ ସାମନ୍ତ ଶମ୍ଭୁ ଥିଲା । ସେ ଶବରୀ ପାଦଙ୍କ ଶିଷ୍ୟ ଥିଲେ ।

## ଶବରୀନାଥ

ଶବରୀନାଥ ନାଥ ପରମ୍ପରାର ଅନ୍ୟତମ ପ୍ରସିଦ୍ଧ ଗୁରୁ । ସହଜଯାନୀ ସିଦ୍ଧପରମ୍ପରାରେ ସେ ଶବରୀପା ନାମରେ ପ୍ରସିଦ୍ଧ । ଚର୍ଯ୍ୟା ପଦରେ ଶବରୀପାଦଙ୍କର ବହୁପଦ ସଂଗୃହୀତ । କାହ୍ନପାଦ ତାଙ୍କୁ ବହୁତ ଶ୍ରଦ୍ଧାରେ ସ୍ମରଣ କରିଛନ୍ତି ଏବଂ ତାଙ୍କ ରଚିତ ଏକ ପଦରେ ଶବର ପାଦ ମହାସୁଖର ନିବାସସ୍ଥଳୀରେ ବାସକରୁଥିବାର ବର୍ଣ୍ଣନା କରିଛନ୍ତି । ସେ ଅଷ୍ଟମ ଶତାବ୍ଦୀର କବିରୂପେ ଗୃହୀତ ।

## ସତୀକଣେଆରୀ

ସତୀକଣେଆରୀ ହେଉଛନ୍ତି ନାଥ ପରମ୍ପରାରେ ପ୍ରସିଦ୍ଧି ଲାଭ କରିଥିବା ସତୀ କାଣେରୀ । ଆଚାର୍ଯ୍ୟ ହଜାରୀ ପ୍ରସାଦ ଦ୍ୱିବେଦୀ ସତୀ କାଣେରୀଙ୍କର ରଚିତ କେତେକ ପଦ ସଂଗ୍ରହ କରି ପ୍ରକାଶ କରିଛନ୍ତି।



# ପରିଶିଷ୍ଟ- ୩
# ପାରିଭାଷିକ ଶବ୍ଦାବଳୀ

### ଅନହତ ବା ଅନହଦ

ଏ ଶବ୍ଦ ଅନହତ ବା ଅନାହତ ଭାବରେ ବ୍ୟବହୃତ । ଏଥିରୁ ଦୁଇଟି ଅର୍ଥ ପ୍ରକାଶ ପାଏ ; ସୀମା ବା ସରହଦ ନଥିବା ଅର୍ଥାତ୍ ଅସୀମ, ପୁଣି ନ ବଜେଇକରି ବାଜୁଥିବା ଶବ୍ଦ । କବିମାନେ ଏହି ଶବ୍ଦକୁ ଏହି ଦୁଇ ଅର୍ଥରେ ବ୍ୟବହାର କରିଛନ୍ତି । ଏହାକୁ ଯୋଗୀମାନେ ସମାଧି ଅବସ୍ଥାରେ ଶୁଣିଥାନ୍ତି ଏବଂ ଏହା ମାନବଶରୀର ମଧ୍ୟରୁ ଆପେ ଆପେ ଉଦ୍ଭୂତ ହୋଇଯାଏ । ଅନହଦ କେବଳ ପିଣ୍ଡ ବା ଶରୀର ମଧ୍ୟରେ ଧ୍ୱନିତ ହୁଏ ନାହିଁ । ଏହା ସମ୍ପୂର୍ଣ୍ଣ ବିଶ୍ୱରେ ଧ୍ୱନିତ ହେଉଥାଏ । ଯେଉଁ ଯୋଗୀ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରି ପ୍ରାଣବାୟୁକୁ ଶୁଷମ୍ନା ମଧ୍ୟରେ ପ୍ରବେଶ କରାଇଦିଏ, ସେହି ଯୋଗୀ କେବଳ ଏହି ଧ୍ୱନି ଶୁଣିଥାଏ ।

### ଅମରକୋଷ

ତରବାରୀକୁ ଖୋଳ ଭିତରେ ରଖିବା ପରି, ପିଣ୍ଡକୁ ମାୟା ଆବୃତ୍ତ କଲାପରି, ଶରୀରକୁ ପଞ୍ଚକୋଷ ଅର୍ଥାତ୍ ମୁଣା ବା ଥଳୀରେ ରଖାଯାଇଛି । ଏହି ପାଞ୍ଚୋଟି କୋଷ ହେଉଛି ଅନ୍ନମୟ କୋଷ, ପ୍ରାଣମୟ କୋଷ, ମନୋମୟ କୋଷ, ବିଜ୍ଞାନମୟ କୋଷ ଓ ଆନନ୍ଦମୟ କୋଷ ।

### ୧ । ଅନ୍ନମୟ କୋଷ -

ଏହା ଚର୍ମଠାରୁ ଅସ୍ଥିପର୍ଯ୍ୟନ୍ତ ବ୍ୟାପ୍ତ । ଏହା ଅନ୍ନଦ୍ୱାରା ଜାତ ହୁଏ ଏବଂ ଅନ୍ନଦ୍ୱାରା ବୃଦ୍ଧିପ୍ରାପ୍ତ ମଧ୍ୟ ହୁଏ । ଶୁକ୍ର ଶୋଣିତରେ ମିଶିକରି ଜନ୍ମିବା ଏବଂ ବୃଦ୍ଧି ପାଇବା ଆଦି ଷଡ଼ବିକାରାଦିଯୁକ୍ତ ହୁଏ । ଏହାର ଆକାର ସ୍ତମ୍ଭ ସଦୃଶ । ସ୍ଥୂଳରୂପରେ ଏହାର କର, ଚରଣ, ଅବୟବ ଆଦି ତ୍ୱକ୍‌ଚର୍ମାଦି ସପ୍ତଧାତୁରେ ନିର୍ମିତ ହୁଏ । ସମସ୍ତ ପ୍ରାଣୀକୁ ଦେଖାଯାଉଥିବା ସ୍ଥୂଳ ଶରୀରକୁ ଅନ୍ନମୟ କୋଷ କୁହାଯାଏ । ଏହା ଜନ୍ମର ପୂର୍ବରୁ ଏବଂ ମୃତ୍ୟୁପରେ ନଥାଏ । ମାତାପିତାଙ୍କର ସଂଯୋଗରୁ ଜାତ ହୋଇ ବିଲୟ ପ୍ରାପ୍ତ ହେଉଥିବାରୁ ଏହାକୁ ଆତ୍ମା କୁହାଯାଇପାରେ ନାହିଁ । କାରଣ ଆତ୍ମା ସଦାସର୍ବଦା ବିରାଜମାନ ଥାଏ ।

**୨ । ପ୍ରଣମୟ କୋଷ -**

ପଞ୍ଚପ୍ରାଣ, ପଞ୍ଚ କର୍ମେନ୍ଦ୍ରିୟ ପଞ୍ଚଉବାୟୁ ମିଶି ପ୍ରାଣମୟ କୋଷ ହୁଏ । ଏହା ଘଟଭଳି ଜଡ଼ ସ୍ୱଭାବ ବିଶିଷ୍ଟ ଏବଂ କ୍ଷୁଧା ପିପାସା ଓ ରଜଗୁଣ ଏବଂ ଅହଂକାରରେ ପୂର୍ଣ୍ଣ । ଏହାକୁ ମଧ ଆତ୍ମା କୁହାଯାଏ ନାହିଁ ।

**୩ । ମନୋମୟ କୋଷ -**

ଏହା ହଂସ ସ୍ୱରୂପରେ ପ୍ରାଣବାୟୁ ସହ ମିଶିଥାଏ । ମନ ଓ ଜ୍ଞାନେନ୍ଦ୍ରିୟ ମିଶି ମୁଁ ବୋଲିବା ଅଭିମାନରୁ କେତେବେଳେ ନାଡ଼ୀ ବିକାର ପୂର୍ଣ୍ଣ ଥାଏ ତ କେତେବେଳେ ବୃତ୍ତିହୀନ ଥାଏ । ସୁଷୁପ୍ତିରେ ଏହା ଜଡ଼ ପରି ରହିଥାଏ । ଅହଙ୍କାର ଯୁକ୍ତ ହେଉଥିବାରୁ ଏହା ମଧ ଆତ୍ମା ନୁହେଁ।

**୪ । ବିଜ୍ଞାନମୟ କୋଷ -**

ବୁଦ୍ଧି ଆଉ ପଞ୍ଚଜ୍ଞାନେନ୍ଦ୍ରୟ ମିଶି ବିଜ୍ଞାନମୟ କୋଷ ହୁଏ । ଏଥିରୁ ସୃଷ୍ଟି ବିଦ୍ୟା ଓ ମନ ଦ୍ୱାରା ହୋ ଅହଂକାର ଜାତ କରାଉଥିବାରୁ ଏହା ମଧ ଆତ୍ମା ନୁହେଁ ।

**୫ । ଆନନ୍ଦମୟ କୋଷ -**

ବିଜ୍ଞାନ ଦ୍ୱାରା ପରମାନନ୍ଦ ଲାଭ କରି ସତ୍ତ୍ୱ, ରଜ, ତମ ଗୁଣାତ୍ମକ ହେବା ଅବିଦ୍ୟାହିଁ ଆନନ୍ଦମୟ କୋଷ । ଏହା ତିନିପ୍ରକାର- ପ୍ରିୟ, ମୋଦ ଓ ପ୍ରମୋଦ ।

(କ) ପ୍ରିୟ : ପଦାର୍ଥକୁ ଦେଖିବା ମାତ୍ରେ ଆନନ୍ଦଲାଭ କରିବା ।

(ଖ) ମୋଦ : ସେ ପଦାର୍ଥକୁ ପ୍ରାପ୍ତଜନିତ ସନ୍ତୋଷ ।

(ଗ) ପ୍ରମୋଦ : ଉପଭୋଗ କରିବାର ସନ୍ତୋଷ ।

ଏହି ପାଞ୍ଚକୋଷ ଘଟ ବା ଶରୀର ପରି ଜଡ଼ ହୋଇଥିବାରୁ ଏହା ଆତ୍ମା ନୁହେଁ । ଏହି କୋଷକୁ ଅମର କରିବାର ଉପାୟ ବା ସାଧନା **ଅମରକୋଷ** ଗ୍ରନ୍ଥରେ ବର୍ଣ୍ଣିତ ।

**ଗୋଲ୍ଲାହାଟ**

ଗୋରଖ ଏହାକୁ ଗୋଲ୍ଲାଦ୍-ମଣ୍ଡପ କହନ୍ତି । ଏହା ଲଲାଟର ଉର୍ଦ୍ଧ୍ୱ ଦେଶରେ ଓ ସହସ୍ତାର ସମ୍ମୁଖରେ ଅବସ୍ଥିତ । ଏହା ଭିତରେ ଏକ ନିଶ୍ଚଳ ଉଜ୍ଜ୍ୱଳ ଆଲୋକ ସବୁବେଳେ ଜଳୁଥାଏ । ଯୋଗୀ ସଂସାରର ସମସ୍ତ କାମନା ଓ ଭାବନା ମଧରୁ ମନକୁ ମୁକ୍ତ କରି ଗୋଟିଏ ଆସନରେ ବସି ଏହି ଆଲୋକକୁ ଧ୍ୟାନ କରେ ।

## ତ୍ରିବେଣୀ

ଇଡା, ପିଙ୍ଗଳା, ଓ ସୁଷୁମ୍ନା ନାଡି ତ୍ରିକୁଟରେ ମିଳିତ ହୁଅନ୍ତି । ସନ୍ଥ-କବିମାନେ ପ୍ରତୀକ ରୂପରେ ଇଡ଼ା, ପିଙ୍ଗଳା ତଥା ସୁଷୁମ୍ନାକୁ ଗଙ୍ଗା, ଯମୁନା ତଥା ସରସ୍ୱତୀ କହିଛନ୍ତି । ଏହି ତିନି ନଦୀର ମିଳନ ସ୍ଥାନକୁ ତ୍ରିବେଣୀ କୁହାଯାଇଛି । ଏହି ତିନି ନାଡ଼ିର ଶୋଧନ କଲେ ସାଧକକୁ ସିଦ୍ଧତ୍ୱ ମିଳେ । ଦୁଇ ଭୃଲତାର ମଧ ସ୍ଥାନରେ ଏହା ମିଳିତ ହୁଏ । ଏହାର ଅନ୍ୟ ନାମ ତ୍ରିକୁଟ ତିହୁଡ଼ି ଭ୍ରମର ଗୁମ୍ଫା ଜ୍ଞାନ ଗୁମ୍ଫା ବା ଗଗନ ଗୁମ୍ଫା । ଏହା ପରମାନନ୍ଦ ପ୍ରାପ୍ତିର ସ୍ଥାନ ।

**ଅମରକୋଷ**ରେ ଘଣ୍ଟିକା ଦ୍ୱାରସ୍ଥିତ ସ୍ଥାନକୁ ତ୍ରିବେଣୀ ଧାର କୁହାଯାଇଛି । ଏହା କେବେ ଶୁଖେ ନାହିଁ । କବୀର ଏହାକୁ ଅମୃତ ରସର ନିର୍ଝରଣୀ କହିଛନ୍ତି- '' ନିର୍ଝର ଝରୈ ରସ ପୀଜିଏ । ତହିଁଭଂବର ଗୁମ୍ଫାକେ ଘାଟିରେ ।'' (କବୀର ଗ୍ରନ୍ଥାବଳୀ, ପୃ-୮୮)

## ଦଶଦ୍ୱାର

ମୁଖ ୧, କର୍ଣ୍ଣ ୨, ନାସିକା ୨, ଚକ୍ଷୁ ୨, ପାୟୁ ବା ଗୁହ୍ୟ ୧, ଉପସ୍ଥ ବା ଲିଙ୍ଗ ୧, ଓ ବ୍ରହ୍ମରନ୍ଧ୍ର ୧ । ଏଇ ବ୍ରହ୍ମରନ୍ଧ୍ରରେ ମନ ବାସ କରେ ।

## ନିରଞ୍ଜନ

ନିରଞ୍ଜନ ଶବ୍ଦର ଶାବ୍ଦିକ ଅର୍ଥ ଅଞ୍ଜନ ରହିତ ''ଅଞ୍ଜନ'ର ଅର୍ଥ ହେଉଛି ମାୟା । ସମସ୍ତ ଜଗତ ମାୟା ଦ୍ୱାରା ଆବୃତ । ସାଧକମାନଙ୍କ ମତରେ କେବଳ ପରମବ୍ରହ୍ମ ମାୟାବଶ ନୁହେଁ । ସେ ନିର୍ଲିପ୍ତ ନିର୍ବିକାର । ସେଥିପାଇଁ ତାଙ୍କୁ ନିରଞ୍ଜନ କୁହାଯାଇଛି । ନାଥ ସମ୍ପ୍ରଦାୟରେ ନିରଞ୍ଜନଙ୍କ ଉପାସନା ମାନବାତ୍ମାର କଲ୍ୟାଣ ପାଇଁ କରାଯାଇଥାଏ । ସ୍ୱାମୀ ରାମାନନ୍ଦଙ୍କ ମତରେ ପିଣ୍ଡ ଓ ପ୍ରାଣରକ୍ଷାର ଏକମାତ୍ର ଉପାୟ ହେଉଛନ୍ତି ନିରଞ୍ଜନ । ଧର୍ମ ସମ୍ପ୍ରଦାୟର ଲୋକେ ଧର୍ମ ଦେବତାଙ୍କୁ ନିରଞ୍ଜନ ସହ ତୁଳନା କରିଛନ୍ତି । ଓଡ଼ିଶାରେ ଜଗନ୍ନାଥଙ୍କୁ 'ନିରଞ୍ଜନ' କୁହାଯାଇଛି ।

ନବନାଟୀ (ନାଡ଼ି), ଇଡ଼ା (ଚନ୍ଦ୍ରନାଡ଼ି ), ପିଙ୍ଗଳା (ସର୍ଯ୍ୟ ନାଡ଼ି), ସୁଷୁମ୍ନା (ମଧ୍ୟନାଡ଼ି), ଗାନ୍ଧାରୀ (ଡାହାଣ ଆଖିର ନାଡ଼ି), ହସ୍ତିଜିହ୍ୱା (ବାମ ଆଖିର ନାଡ଼ି), ପୁଷା (ଡାହାଣ କାନର ନାଡ଼ି), ପଣ୍ୟତୀ (ବାଁ କାନର ନାଡ଼ି), ଲକୁହା (ସ୍ଫୀତ ନାଡ଼ି), ଅଚ୍ଚ ସୁଷ (ଲିଙ୍ଗ ନାଡ଼ି) ।

## ପୁରା

ସନ୍ଥ ସାହିତ୍ୟରେ 'ପୁରା'ର ଅର୍ଥ ହେଉଛି 'ଜୀବାତ୍ମା' । ଓଡ଼ିଆ ସାହିତ୍ୟରେ

ଅମରକୋଷ ଓ ସପ୍ତାଙ୍ଗରେ ସନ୍ଥ ସାହିତ୍ୟର 'ପୁଭା' ପରମ୍ପରା ପରିଲକ୍ଷିତ ହୁଏ ।

## ବଙ୍କନାଳ

ହଠ ଯୋଗରେ ମେରୁଦଣ୍ଡ ଦ୍ୱାରା ଯେଉଁ କାର୍ଯ୍ୟ ସାଧିତ ହୁଏ ଧ୍ୟାନ ଯୋଗରେ ତାହାହିଁ ବଙ୍କନାଳ ଦ୍ୱାରା ସମାହିତ ହୋଇଥାଏ । ବଙ୍କନାଳ ମୂଳାଧାରରୁ ଜାଗ୍ରତ ହୋଇ ନାଭୀର ବାମ ପାଖ ଦେଇ ହୃଦୟ ବକ୍ଷସ୍ଥଳକୁ ସ୍ପର୍ଶ କରେ ଏବଂ ଆଜ୍ଞାଚକ୍ରରେ ସ୍ଥିତ ରୁଦ୍ର ସହ ମିଶେ । ଏଠାରୁ ବ୍ରହ୍ମରନ୍ଧ୍ର ହୋଇ ମସ୍ତକ ପର୍ଯ୍ୟନ୍ତ ଯାଏ ଏବଂ ପୁଣି ବକ୍ରାକାରରେ ବ୍ରହ୍ମରନ୍ଧ୍ରରେ ପ୍ରବେଶ କରେ । ଏହି ଅବସ୍ଥାରେ ଏହାର ଆକାର ଅର୍ଦ୍ଧବୃତ୍ତାକାର ପଦ୍ମନାଡ଼ ସଦୃଶ ହୋଇଥାଏ । ତେଣୁ ଏହାକୁ ବଙ୍କନାଳ କୁହା ଯାଏ । ଏହା ପୁଣି ଭ୍ରମର ଗୁମ୍ଫାରେ ପ୍ରବେଶ କରିଯାଏ । କେହି କେହି ସୁଷୁମ୍ନା ପାଇଁ ବଙ୍କନାଳ ଶବ୍ଦର ପ୍ରୟୋଗ କରିଥାନ୍ତି ।

## ଭ୍ରମର ଗୁମ୍ଫା

ଏହାର ଅବସ୍ଥିତି ମେରୁହାଡ଼ର ଉପରି ଭାଗରେ ଏବଂ ସହସ୍ରାରର ପଛ ପଟେ । ଏହା ଯୋଗୀମାନଙ୍କ ଦ୍ୱାରା 'ବିନ୍ଦୁସ୍ଥାନ' ବା ବୀର୍ଯ୍ୟସ୍ଥାନ ରୂପେ କଳ୍ପିତ । ବିନ୍ଦୁ ଏ ସ୍ଥାନରୁ ସ୍ଖଳିତ ହୋଇ ଶରୀରର ଅନ୍ୟ ଅଂଶରେ ଉତ୍ତେଜନା ସୃଷ୍ଟି କରେ । ଯୋଗୀମାନେ ବିନ୍ଦୁକୁ ସ୍ଥିର କରି ଶରୀରକୁ ଉତ୍ତେଜନାବିହୀନ କରିବାକୁ ଚେଷ୍ଟା କରନ୍ତି । ଏହା ଆରକ୍ତ ଭ୍ରମରାକାର ହୋଇଥିବାରୁ ଏହାକୁ ଭ୍ରମର କୁହାଯାଏ । ଏହାକୁ ବ୍ରହ୍ମଚକ୍ର ମଧ୍ୟ କୁହାଯାଏ । ଏଥିରେ ଶହେଆଠ ଦଳ ପଦ୍ମ ଅଛି । ଏହିଠାରୁ ସମାଧି ଅବସ୍ଥା ଆରମ୍ଭ ହୁଏ । ପ୍ରାଣ ଓ ମନର କାର୍ଯ୍ୟ ରୁଦ୍ଧ ହୁଏ । ଏହି ପଦ୍ମର ଦଶଲକ୍ଷ ଦଳ ଅତ୍ୟନ୍ତ ଉଜ୍ଜ୍ୱଳ । ଏହାର ଦେବତା ଅଲକ୍ଷ ନାଥ, ଶକ୍ତି ମାୟା, ଋଷି ମହାବିଷ୍ଣୁ ।

## ମେରୁଗିରି

ଶରୀରର ମେରୁଦଣ୍ଡର ଶୀର୍ଷ ଭାଗକୁ ମେରୁପର୍ବତ କୁହାଯାଇଛି । ଶ୍ରୀ ସଂପୁଟ ତନ୍ତ୍ରରେ କୁହାଯାଇଛି ପାଦତଳରେ ଭୈରବ ଧନୁରାକୃତି ବାୟୁ ଅଛି । କଟି ଦେଶରେ ତ୍ରିକୋଣ ଉଦ୍ଧରଣ ଅଛି । ଏହି ତ୍ରିକୋଣରେ ତିନୋଟି ଦଳ ବିଶିଷ୍ଟ ପଦ୍ମ । ଏହାରି ଉପରେ ବର୍ତ୍ତୁଳାକାର ବାସ । ଏହାର ହୃଦୟରେ ପୃଥ୍ୱୀ ସବୁ ଦିଗରେ ବ୍ୟାପ୍ତ ହୋଇ ରହିଛି । ଏହିପରି ଭାବରେ ମେରୁଦଣ୍ଡ ବା କଙ୍କାଳଦଣ୍ଡ ଭାବେ ଗିରିରାଜ ସୁମେରୁର ବାସ ବୋଲି ନାଥମାନେ ପରିକଳ୍ପନା କରିଥାନ୍ତି ।

## ଷଡଚକ୍ର

୧-ମୂଳାଧାର ଚକ୍ର, ୨-ସ୍ୱାଧିଷ୍ଠାନ ଚକ୍ର, ୩-ମଣିପୁର ଚକ୍ର, ୪-ଅନାହତ ଚକ୍ର,

୫-ବିଶୁଦ୍ଧ ଚକ୍ର ଓ ୬-ଆଜ୍ଞା ଚକ୍ର । ଏହା ବ୍ୟତୀତ ସହସ୍ରାର ଚକ୍ର ମଧ୍ୟ ଅଛି । ଏହା ବ୍ରହ୍ମ ରନ୍ଧ୍ରରେ ଅବସ୍ଥିତ । ଏହାକୁ ସହସ୍ରାର ଚକ୍ର ବା ସହସ୍ର ଦଳ କମଳ କୁହାଯାଏ । ଏହି ତ୍ରିକୋଣାକାର ଚକ୍ରରେ ପୂର୍ଣ୍ଣଚନ୍ଦ୍ର ମଣ୍ଡଳ ଅଛି । ଏଥିରେ ଏକ ଅଲୌକିକ ଆଲୋକପୁଞ୍ଜ ବା ଜ୍ୟୋତି ପ୍ରକାଶିତ ହେଉଥାଏ । ଏହା ପରମ ଶିବଙ୍କ ନିବାସ ସ୍ଥାନ । ଏହା ନିକଟରେ ସହସ୍ର ସୂର୍ଯ୍ୟଙ୍କ କିରଣ ତୁଲ୍ୟ ଅର୍ଦ୍ଧଚନ୍ଦ୍ର ଆକାରରେ ନିର୍ବାଣ କଳାର ନିବାସ ଏବଂ ଏହା ମଧ୍ୟରେ ନିର୍ବାଣ ଶକ୍ତି ନିହିତ । ସହସ୍ରାର ଚକ୍ର ତାଳୁ ମୂଳରେ ଅବସ୍ଥିତ । ଏହା ଭିତରେ ସୁଷୁମ୍ନାର ବିବର, ମୂଳାଧାରରୁ କୁଣ୍ଡଳିନୀ ଜାଗ୍ରତ ହୋଇ ଷଡ଼ଚକ୍ର ଭେଦ କରି ଏଥିରେ ପ୍ରବେଶ କରେ । ଏଥିରେ ଛଅ ଦ୍ୱାର । ଏହାକୁ କୁଣ୍ଡଳିନୀ ଉନ୍ମୁକ୍ତ କରେ । ପ୍ରାଣାୟାମର ଶକ୍ତିଦ୍ୱାରା ଆତ୍ମା ଏହି ବିନ୍ଦୁ ଉପରେ ପହଞ୍ଚି ଶରୀରଠାରୁ ସ୍ୱତନ୍ତ୍ର ହୁଏ ଏବଂ ସୋଽହଂର ଅନୁଭବ କରେ । ଚକ୍ର ପାଇଁ ସାଧାରଣତଃ କମଳ ଶବ୍ଦ ପ୍ରଯୁକ୍ତ ହୁଏ । ଷଟ୍‌ଚକ୍ର ଭେଦ କଲେ ସାଧକ କାମବାସନାରୁ ମୁକ୍ତ ହୁଏ । ପରଂବ୍ରହ୍ମ ଏହି ଷଟ୍‌କମଳ ମଧ୍ୟରେ ଅବସ୍ଥିତ । ଏଥିରେ ଏହାର ଜ୍ୟୋତି ପ୍ରଜ୍ୱଳିତ ହେଉଥାଏ । ସନ୍ଥ କବିମାନେ ଏହି ଷଟ୍ କମଳ ମଧ୍ୟରେ ବିଭିନ୍ନ ବର୍ଣ୍ଣର ଏବଂ ବିଭିନ୍ନ ଦେବଦେବୀର ଅବସ୍ଥିତି ନିର୍ଣ୍ଣୟ କରିଥାନ୍ତି । **ସପ୍ତାଙ୍ଗ** ଯୋଗ ସାଧନାରେ ଛଅ ଦିନରେ ଛଅ କମଳ ଭେଦ କରି ସପ୍ତମ ଦିନରେ ସହସ୍ରାରରେ ମିଳିତ ହେବାର ଉପାୟ ବର୍ଣ୍ଣିତ ହୋଇଛି । ଷଟଚକ୍ର ସାଧନା ଓଡ଼ିଆ ସାଧକମାନଙ୍କ ନିକଟରେ ଭଗବତ ଭକ୍ତି ପ୍ରାପ୍ତିର ଏକ ସୋପାନ ।

## ହଂସ

ହଂସର ମୂଳ ଅର୍ଥ ହେଉଛି ଜୀବାତ୍ମା । ପ୍ରାଣୀମାନଙ୍କର ନିଶ୍ୱାସକୁ ମଧ୍ୟ ହଂସ କୁହାଯାଏ । 'ହ' କାର 'ସ' କାର ବିନ୍ଦୁ ସଂଯୁକ୍ତ ହେଲେ ହଂସ ହୁଏ । 'ହ' କାର ଶିବ ବୀଜ, 'ସ' କାର ଶକ୍ତି ବୀଜ । ଏ ଦୁହିଁଙ୍କର ମଧ୍ୟ ଦେଶରେ ଥିବା ବିନ୍ଦୁ ହେଉଛି ବୁଦ୍ଧତତ୍ତ୍ୱ । ଶିବ ଓ ଶକ୍ତିର ସଂଯୋଗ ଏଥିରେ ହୁଏ । 'ହ' କାର ଶୁକ୍ଳ 'ସ' କାର ରକ୍ତ । ଏ ଦୁଇର ସଂଯୋଗରୁ ବିନ୍ଦୁ ଉତ୍ପତ୍ତି ହୁଏ । 'ହ' କାର ସୂର୍ଯ୍ୟ ନାଡ଼ୀ ବା ପିଙ୍ଗଳା, 'ସ' କାର ଚନ୍ଦ୍ର ନାଡ଼ୀ ବା ଇଳା । ଏହି : ଉଭୟ ମଧ୍ୟରେ ଥିବା ବିନ୍ଦୁକୁ ତେଜ ନାଡ଼ୀ ବା ସୁଷୁମ୍ନା କୁହାଯାଏ । 'ସ' କାର ଶକ୍ତିବୀଜ ହୋଇଥିବାରୁ ଏହା ବୁଦ୍ଧିକୁ ବିଷୟାସକ୍ତ କରେ । ଅଥଚ ବୁଦ୍ଧି 'ହ' କାର ସଂଯୁକ୍ତ ହେଲେ ନିର୍ବିଷୟ ଜ୍ଞାନଲାଭ କରେ । ଏହାକୁ ନାଦ ବିନ୍ଦୁ ଓ କଳା ମଧ୍ୟ କୁହାଯାଇଥାଏ । ହଂସ ପ୍ରାଣବାୟୁରେ ସ୍ପଷ୍ଟ ଭାବେ ପ୍ରତ୍ୟକ୍ଷୀଭୂତ ହୁଏ । ପ୍ରାଣର ଅର୍ଥ ହେଉଛି ଭିତରକୁ ଯାଇ ବାହାରକୁ ଆସୁଥିବା ଶ୍ୱାସ । ଶରୀରରେ ଏହାର ଅର୍ଥାତ୍ ହଂସର ଜପର ସଂଖ୍ୟା ହେଉଛି ଦିନକୁ ୨୧ ହଜାର ୬ ଶହ ।।



# ପରିଶିଷ୍ଟ-୪

ଅବିସାରୀ - ଅଭିସାର

ଅକ୍ଷୁମାରି - ଅଛୁମାରୀ

ଅପ୍ରତେ - ଅବିଶ୍ୱାସ

ଅଭିମନ - ଅଭିମନ୍ୟୁ

ଆଏ - ଆସେ

ଆଭସ୍ମନ-ଭସ୍ମ

ଉଦିନରେ-ଉଦୟ ହେଲେ

ଉଞ୍ଚାର -ଉଚ୍ଚାରଣ କରିବା

ଉପଚାର - ପୂଜା, ଅର୍ଚ୍ଚନା

ଉପାଲମ୍ୟ-ତୁଳନା

ଉଡିଷ୍ଟ-ଅଇଁଠା

ଏକୁଂ-ଏକ

ଏନେ-ଏପରି

ତ୍ରୀର୍ତ୍ତି-କୀର୍ତ୍ତି

କେୟେଂ-କି

କଣୟ-କନକ

କକର୍ଥନ୍ତି-କଷ୍ଟ ଦିଅନ୍ତି

କୁଇରେ-ଭିକ୍ଷାଥଳୀ

ଖେଖେଣି-କ୍ଷଣି, କ୍ଷଣି

ଖୁରୀ-ଖୁରା

ଗାଜନ୍ତି-ଗର୍ଜନ କରନ୍ତି

ଗବନ-ଗମନ

ଗୁଣ୍ଡି-ଗୁଣ୍ଡ(ଚୂନା)

ଗାଗ୍ରେବ-ଗାର୍ଗବ

ଘଟୁଆର-ଘଟୁଆଳ

ଘେଡ଼-ଘଡ଼ି

ଅଧୃତି - ଅଧୈର୍ଯ୍ୟ

ଅର୍ଗଳ - ବାଧାହୀନ

ଅଚାର୍ଗଳ- ଅଧିକ

ଅଞ୍ଜନା - କଳା

ଆହୁଟ - ସାଢ଼େ ତିନି (ତିନି ଅଧେ)

ଉଲଛି - ତ୍ୟାଗ

ଉତ୍ୟନଶାୟୀ-ଚିତ୍‌ପଟ ହୋଇ ଶୋଇବା

ଉଦୁତୁଆ - ଉଦିତ

ଉସତ-ଆନନ୍ଦ

ଉଛୁଡ଼ନ୍ତେ-ଟାଣିବା

ଏହେର୍ଣ୍ଣ-ଏପରି

ଓହୋଟ-ଓଲଟ

କଏ-କରେ

କୋର-ଚକୋର

କାରେଣି-କର୍ତ୍ତା

କୁମା-ବାଲ୍ୟାବସ୍ଥା

ଖିଦ୍ର-କ୍ଷୁଦ୍ର

ଖୁମୁଳା-ଦୁଷ୍ଟ

ଖେପିଲେ-ପକାଇବା

ଗୁଞ୍ଜୁକା-କାଇଁଚ ଫଳ

ଗୋସାମଣି-ଗୋସ୍ୱାମିନୀ

ଗୋଇ-ଗୋପୀ

ଗୁଡ଼ିଲେ-ଧୂଳି ଲିପ୍ତ ହେଲେ

ଘେର-ବେଢ଼ାବୁଲିବା, ଚକ୍ରାକାର

ଘେଡି-ଘେନି

ଚଲଲେ-ଚଳିଲେ

ଚେରୀ ଚେଡ଼ି-ଦାସୀ

ଛଛନ୍ଦ-ସଛନ୍ଦ

ଛଞ୍ଚିତ-ସଂଚିତ

ଛେମା-କ୍ଷମା

ଛରିଅଛି-ଝରଅଛି

ଜଗତ୍ରାଧି-ଜଗତର ଅଧିପତି

ଟାକଇ-ପରିହାସ

ଟେକୁ-ଉଠାଇବା

ତାଏ-ତାକୁ

ତରକ-ତର୍କ

ତୁମ୍ବୁର-ଏକ ପ୍ରକାର ବାଦ୍ୟ

ଦିଲା-ଦେଲା

ଦୁଗୁଧା-ଦଗ୍ଧ

ଧୁସା-ଦୁଃଶାସନ

ନଶ୍ୟନ୍ତି-ନାଶ ହୁଅନ୍ତୁ

ନଗଚଇ-ସମାନ ନ ହୋଇ

ନେଚେ-ନୀଚ

ନିଓଯୋଗ-ନିଯୋଗ

ନିଶାଣ-ବାଦ୍ୟ

ପତଲେ-ପାତଳା

ପଞ୍ଚୁଜନ-ପାଞ୍ଚଜନ୍ୟ

ପଚଣ-ପାକ

ପରାଭବି-ଅପମାନିତ

ପହିରନୁଆ-ପରିଧାନ

ପାଖର-କେ ପ୍ରକାର ଲୌହ ପୋଷାକ

ଫୁଙ୍କାବନ୍ଧେ-ଗୋଲାହାଟ

ବଟୁ-ଶିଷ୍ୟ

ବେଧଲେ -ବିନ୍ଧକଲେ

ଚାରିଖାନି- ସ୍ଥାବର, ଜଙ୍ଗମ, କୀଟ, ପତଙ୍ଗ

ଚାରିଖାନି-ଚାରିଅଧ୍ୟାୟ

ଛଡ଼-ଷଡ଼

ଛିନାଇ-ଛିନ୍ନ

ନତୁଂକ-ଜନଙ୍କର

ଝିମଟେ-କ୍ଷଣକେ

ଟେକ-ବଢ଼ିବା

ତାକଇ-ତାହାକୁ

ତାଗଲ-ତାଳ

ତରାସ-ଆଲୋକ

ତୁଷ୍ଟୀ-ସନ୍ତୁଷ୍ଟ

ଦ୍ରିବ -ଦିବ୍ୟ

ଦିଢ଼-ଦୃଢ଼

ନାରାଜ-ତୀର

ନୁଆରି -ନପାରି

ନାନ-ପୁତ୍ର

ନଛିଲା-ତ୍ୟାଗକଲା

ନଟାର-ନଟ

ପରଚେ-ପରିଚୟ

ପୁନାଙ୍ଗ-୧ ପୁନାଙ୍ଗ ଗଛ, ୨ ବୀଟ ପୁରୁଷ

ପ୍ରାକର୍ମ-ପରାକ୍ରମ

ପୁରୁଷା-ପୁରୁଷ

ପଟକାଠି-କାଉଁରିଆ

ପରିଧୁନିଆ-ବିଶେଷ ଧ୍ୱନି

ଫୁଙ୍କାଇଁ -ପାଟିକରି

ବେଜ-ବୈଦ୍ୟ

ବାଇଂବ-ବାୟୁ

❋